ମହାତ୍ମା ଗାନ୍ଧୀଙ୍କ

# ଜୀବନଚରିତ ।

ଶ୍ରୀଯୁକ୍ତ ଗୋବନ୍ଦଚନ୍ଦ୍ର ମିଶ୍ର ପ୍ରଣୀତ ।

ପ୍ରଥମ ସଂସ୍କରଣ ।

ପ୍ରକାଶକ—

ଶ୍ରୀ ଅତୁଳ ମିଶ୍ର କାବ୍ୟତୀର୍ଥ,

କଟକ ଟ୍ରେଡିଂ କୋମ୍ପାନୀ,

ବାଲୁବଜାର, ପୋ: ଚାନ୍ଦନୀଚୌକ,

କଟକ ।

୧୯୨୧

ମୂଲ୍ୟ ଠ ୦ ।୵

# ସୂଚନା ।



ଆଜ ଆମ୍ଭମାନଙ୍କର ଜନ୍ମଭୂମି ଏହି ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କର ନାମ ସର୍ବତ୍ର ନର ନାରୀ, ବାଳକ ବୃଦ୍ଧ, ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କ ନିକଟରେ ସୁବିଦିତ, ସମସ୍ତେ ମଧ୍ୟ ଏହାଙ୍କର ବିଶେଷ ପରିଚୟ ପାଇବାକୁ ଲାଳାୟିତ । ଏହି ହେତୁରୁ ପ୍ରାୟ ସମସ୍ତ ପ୍ରକାର ପ୍ରାଦେଶିକ ଭାଷାରେ ଏହି ମହାତ୍ମାଙ୍କର ଜୀବନଚରିତ ପ୍ରକାଶିତ ହୋଇ ଜନସାଧାରଣଙ୍କ ମଧ୍ୟରେ ପ୍ରଚାରିତ ହେଲାଣି । ଆମ୍ଭମାନଙ୍କର ମାତୃଭାଷାରେ ମଧ୍ୟ ଏହାର ମୁଦ୍ରଣ ପୂର୍ବରୁ ଖଣ୍ଡିଏ ଦୁଇଖଣ୍ଡି କ୍ଷୁଦ୍ରପୁସ୍ତକ ପ୍ରକାଶିତ ହୋଇଅଛି । ଆମ୍ଭେମାନେ ଏହି ପୁସ୍ତକର ବିଶେଷତ୍ୱ ସମ୍ବନ୍ଧରେ ଏତିକି କହି ପାରୁଁ, ଏଥିରେ ମହାତ୍ମାଙ୍କର ଜୀବନ-ଚରିତ ବିସ୍ତୃତଭାବରେ ବର୍ଣ୍ଣିତ ହୋଇଅଛି ଏବଂ ଗ୍ରନ୍ଥକର୍ତ୍ତା ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର ମହାତ୍ମାଙ୍କର ସତ୍ୟାଗ୍ରହ ଆଶ୍ରମବାସୀ ହୋଇଥିବାରୁ ଅନେକ ନୂତନ ଘଟଣା ଏବଂ ମହାତ୍ମାଙ୍କ ମୁଖନିଃସୃତ ବାଣୀମାନ ସନ୍ନିବେଶିତ କରିଅଛନ୍ତି । ଭାଷା ମଧ୍ୟ ସରଳ ହୋଇଅଛି । ଯେଉଁମାନେ ଏହାକୁ ପଢ଼ିବେ, ସେମାନେ ଏଥିରୁ ମହାତ୍ମାଙ୍କ ଆଦର୍ଶଜୀବନର ପରିଚୟ ପାଇ ନିଜ ଜୀବନରେ ତାହାକୁ କାର୍ଯ୍ୟରେ ପରିଣତ କରି ପାରିଲେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେବ ।

ପୁସ୍ତକ ମଧ୍ୟରେ ଯଦି ସ୍ଥାନେ ସ୍ଥାନେ ମୁଦ୍ରଣ ଦୋଷ ଥାଏ, ତେବେ ପାଠକମାନେ କ୍ଷମା ଦେବେ, ଶୀଘ୍ର ଶୀଘ୍ର ପୁସ୍ତକ ପ୍ରକାଶ କରାଯାଇ-ଥିବାରୁ ସାମାନ୍ୟ ଦୋଷ ରହିବା ସମ୍ଭବପର ।

ଶେଷରେ ପୁସ୍ତକ ମୁଦ୍ରଣ ପୂର୍ବରୁ ପାଣ୍ଡୁଲିପି ସଂଶୋଧନରେ— ବନ୍ଧୁ ଶ୍ରୀଯୁକ୍ତ ଅଗଣି ଦାଶ ଏବଂ ପ୍ରୁଫ ସଂଶୋଧନରେ ଆମ୍ଭମାନଙ୍କ ପୂଜାସ୍ପଦ ଶ୍ରୀଯୁକ୍ତ ବୈଦ୍ୟନାଥ କର ମହାଶୟ ସାହାଯ୍ୟ କରିଥିବାରୁ ସେମାନଙ୍କ ନିକଟରେ ଆମ୍ଭେମାନେ କୃତଜ୍ଞ ରହିଲୁଁ ।

କଟକ ।
୧୨ । ୬ । ୧୯୨୧

ବିନୀତ
ପ୍ରକାଶକ ।

"ମହାତ୍ମା ଗାନ୍ଧୀ"ଙ୍କ

# ଜୀବନଚରିତ ।

## ପ୍ରଥମ ଅଧ୍ୟାୟ ।

ଭାରତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଆରବୀୟ ଉପସାଗର କୂଳରେ ପୋରବନ୍ଦର ନାମକ ଗୋଟିଏ ନଗର । ଏହି ନଗରଟି ଗୋଟିଏ କରଦ ରାଜ୍ୟର ରାଜଧାନୀ । ବମ୍ବେଇ ପ୍ରଦେଶର ଅନ୍ତର୍ଗତ ଗୁଜରାଟ କୂଳରେ ଏହି କରଦ ରାଜ୍ୟଟି ଅବସ୍ଥିତ । ଶ୍ରୀକୃଷ୍ଣଙ୍କ ଲୀଳାଭୂମି ଦ୍ୱାରକାତୀର୍ଥଠାରୁ ପୋରବନ୍ଦରକୁ ଦୂରତା ୬୦ ମାଇଲ । ଏହି ପୋରବନ୍ଦର ନଗରରେ ୧୮୬୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨ ତାରିଖ ଶନିବାର ଦିବସରେ ମହାତ୍ମା ଗାନ୍ଧୀ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ପୂର୍ଣ୍ଣନାମ "ମୋହନଦାସ କରମଚାନ୍ଦ ଗାନ୍ଧୀ" । ଏ ଜାତିରେ ବୈଶ୍ୟ ବଣିଆ ।

ପୋରବନ୍ଦରରେ ଗାନ୍ଧୀଙ୍କର ବଂଶଧରମାନେ ବଡ଼ ସମ୍ଭ୍ରାନ୍ତ ଓ ଲୋକପୂଜ୍ୟ । ମହାତ୍ମା ଗାନ୍ଧୀଙ୍କର ପିତାମହ ଉତ୍ତମଚାନ୍ଦ ଗାନ୍ଧୀ ପୋରବନ୍ଦର ରାଜା ସାହେବଙ୍କର ଦେୱାନ୍ ଥିଲେ । ବହୁକାଳ ପର୍ଯ୍ୟନ୍ତ ସେ ଦେୱାନ-ଗିରି କରି ଶାସନକାର୍ଯ୍ୟ ସୁଚାରୁରୂପେ ପରିଚାଳନା କରିଥିଲେ, କିନ୍ତୁ କୌଣସି କାରଣବଶତଃ ରାଜା ଭିକ୍ମତ୍ଜୀ ସିଂହାସନ ଅଧିରୋହଣ କରିବା ପୂର୍ବରୁ ତାହାଙ୍କର ମାତାଙ୍କ ସହିତ ଉତ୍ତମଚାନ୍ଦ ଗାନ୍ଧୀଙ୍କର ମନୋମାଳିନ୍ୟ ଘଟିଲା ଏବଂ ଉତ୍ତମଚାନ୍ଦ ଗାନ୍ଧୀଙ୍କୁ ଦେୱାନ ପଦ ପରିତ୍ୟାଗ କରି ସ୍ଥାନାନ୍ତରକୁ

ଗାନ୍ଧୀ କ୍ଷମା ଗ୍ରହବାର ବ୍ୟକ୍ତି ନୁହନ୍ତି । ସୁତରାଂ ସାହେବଙ୍କର ଆଦେଶ ପାଳନ କରିବାକୁ ଅସମ୍ମତ ହେଲେ । ଏଥିରେ ସାହେବଙ୍କର ରାଗର ସୀମା ରହିଲା ନାହିଁ । ସେ ନ୍ୟାୟ ଅନ୍ୟାୟ ଭୁଲିଯାଇ ଦେବାନ କର୍ମଚାନ୍ଦଙ୍କୁ ଧରି ଗୋଟିଏ ଗଛତଳେ ବସାଇ ଦେଲେ । ଏହି ଅପମାନକୁ ସେ ଧୀର ସ୍ଥିରଭାବରେ ସହ୍ୟ କଲେ, କିନ୍ତୁ ଘଟନାଟି ଅତି ଶୀଘ୍ର ନଗର ମଧ୍ୟରେ ପ୍ରଚାରିତ ହୋଇଗଲା; ଲୋକଙ୍କ ମଧ୍ୟରେ ବଡ଼ ଚହଳ ପଡ଼ିଗଲା । ଏଜେଣ୍ଟ ସାହେବ ଦେଖିଲେ ଯେ, ବ୍ୟାପାରଟି ବଡ଼ ଗୁରୁତର ହୋଇ ଉଠିଲାଣି । ତେଣୁ ବେଶି ବିଳମ୍ବ ନ କରି ସାହେବ ମହୋଦୟ ଦେବାନଙ୍କ ସହିତ ସନ୍ଧି ସ୍ଥାପନ କଲେ । ଦେବାନଙ୍କୁ ଆଉ କ୍ଷମା ପ୍ରାର୍ଥନା କରିବାକୁ ପଡି ନ ଥିଲା । ଏ ଘଟନା ପରେ ଉଭୟଙ୍କ ମଧ୍ୟରେ ଚିର ମୈତ୍ରୀଭାବ ସ୍ଥାପିତ ହେଲା ।

ମହାତ୍ମା ଗାନ୍ଧୀଙ୍କର ପିତା ଶ୍ରୀଯୁକ୍ତ କରମଚାନ୍ଦ ଗାନ୍ଧୀ ଯେପରି ତେଜସ୍ୱୀ, ଧର୍ମନିଷ୍ଠ ଓ ନ୍ୟାୟପରାୟଣ, ସେହିପରି ତାହାଙ୍କର ମାତା ମଧ୍ୟ ବଡ ତେଜସ୍ୱିନୀ ବୁଦ୍ଧିମତୀ ଓ ଧର୍ମପରାୟଣା ଥିଲେ । ରାଜପରିବାରର ମହିଳାମାନଙ୍କ ଉପରେ ତାହାଙ୍କ ନିର୍ମଳ ଚରିତ୍ରର ମଧ୍ୟ ବଡ଼ ପ୍ରଭାବ ଥିଲା । ଲୋକେ ତାଙ୍କୁ ଖାତିର କରି ଚଳୁଥିଲେ, ସେ ବଡ଼ ସରଳ-ପ୍ରକୃତିର ସ୍ତ୍ରୀ ଥିଲେ । ଟଙ୍କା ସମ୍ପତ୍ତିର ଅଭାବ ନ ଥିଲେ ସୁଦ୍ଧା ସେ ବହୁମୂଲ୍ୟ ଅଳଙ୍କାରରେ ଭୂଷିତ ହେଉ ନ ଥିଲେ । ଦାନ, ଧ୍ୟାନ, ପୂଜାରେ ତାହାଙ୍କର ସମସ୍ତ ସମୟ ଅତିବାହିତ ହେଉଥିଲା । ଧର୍ମ କେବଳ ତାହାଙ୍କର ଏକ ମାତ୍ର ଅବଲମ୍ବନ ଥିଲା । ସେ ଦୈନନ୍ଦିନ ଜୀବନକୁ ଅତି କଠୋର ନିୟମଦ୍ୱାରା ଚାଳିତ କରୁଥିଲେ; କେବଳ ଏତିକି ନୁହେ, ନିଜର ସନ୍ତାନ ସନ୍ତତିମାନଙ୍କୁ ମଧ୍ୟ ଧର୍ମାନୁମୋଦିତ କଠିନ ନିୟମମାନ ପାଳନ କରିବା ସକାଶେ ବାଧ୍ୟ କରୁଥିଲେ । ତାହାଙ୍କର ହୃଦୟ ପ୍ରେମପୂର୍ଣ୍ଣ ଥିଲା । ସୁତରାଂ ସନ୍ତାନଗଣ ତାହାଙ୍କ ନିକଟରେ ସର୍ବଦା ଅନୁରକ୍ତ ରହୁଥିଲେ । ସେବାଧର୍ମରେ ସେ ଜଣେ ଆଦର୍ଶ ମହିଳା, ଘରେ କେହି ପୀଡିତ ହେଲେ ଦିନରାତି ଲାଗି ସେ ସ୍ୱହସ୍ତରେ ରୋଗୀର ସେବା

କରନ୍ତି । ତାହାଙ୍କର ଗୋଟିଏ ବିଶେଷ ଗୁଣ ଏହି ଯେ, ତାହାଙ୍କ ଅନ୍ତଃ ସର୍ବଦା ଦୟାରେ ପୂର୍ଣ୍ଣ ଥିଲା । ଅନ୍ୟାନ୍ୟଙ୍କର ଦୁଃଖ କଷ୍ଟରେ ତାହାଙ୍କର ହୃଦୟ ବିଦୀର୍ଣ୍ଣ ହେଉଥାଏ । ରୋଗୀ, ଶୋଷୀ ଏବଂ କ୍ଷୁଧାତୁର ଲୋକମାନଙ୍କୁ ସେ ସର୍ବଦା ଅନ୍ନ, ବସ୍ତ୍ର ଓ ଔଷଧ ପର୍ଯ୍ୟନ୍ତ ଦାନ କରି ସେମାନଙ୍କର ଅଭାବ ନିଜେ ପୂରଣ କରୁଥିଲେ । ଏହି କାରଣରୁ ପ୍ରତ୍ୟହ ତାହାଙ୍କ ଗୃହରେ ଦରିଦ୍ର ଓ ଅସହାୟ ବ୍ୟକ୍ତିଙ୍କର ଗୋଟିଏ ମେଳା ହେଉଥାଏ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶୈଶବକାଳରୁ ମହାତ୍ମା ଗାନ୍ଧୀ ବଡ଼ ପିତୃମାତୃଭକ୍ତ ଥିଲେ । ବାଲ୍ୟକାଳରେ ପିତାଙ୍କ ସହିତ ସମସ୍ତ ଜୀବନ ଅତିବାହିତ କରିଅଛନ୍ତି । ସର୍ବଦା ପିତାଙ୍କ ନିକଟରେ ରହି ତାହାଙ୍କର ସେବା ଶୁଶ୍ରୂଷାରେ ନିଯୁକ୍ତ ଥିଲେ । ପିତାଙ୍କ ପ୍ରତି ଯେପରି ଅନୁରକ୍ତ, ମାତାଙ୍କ ପ୍ରତି ମଧ୍ୟ ସେ ସେହିପରି ଅନୁରକ୍ତ ଅଟନ୍ତି । "ମା"ର ନାମଟି ଉଚ୍ଚାରଣ ମାତ୍ରେ ତାହାଙ୍କର ହୃଦୟ ଆନନ୍ଦରେ ନାଚି ଉଠେ । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ 'ମାଆ'ର ନାମଟି ମହାତ୍ମା ଗାନ୍ଧୀଙ୍କର ହୃଦୟକୁ ଆର୍ଦ୍ର କରିଦିଏ । ତାହାଙ୍କର 'ମା' ତାହାଙ୍କୁ "ମୋହନ" ବୋଲି ଡାକୁଥିଲେ । "ମୋହନ" ନାମଟି ଯେପରି ମଧୁର ଓ ଚିତ୍ତତୃପ୍ତିକର, ଆଜି ତାହାଙ୍କର ଜୀବନଟି ମଧ୍ୟ ସେହିପରି ପ୍ରତ୍ୟେକଙ୍କ ହୃଦୟରେ ମଧୁ ଢାଳି ଦେଇଅଛି । ମାତାପିତା ଯେପରି, ସନ୍ତାନ ମଧ୍ୟ ତଦ୍ରୂପ । ପିତାଙ୍କର ତେଜସ୍ୱିତା, ଧୀରତା ଓ ରାଜନୀତି ଯେପରି ମହାତ୍ମା 'ମୋହନଦାସ କର୍ମଚାନ୍ଦ ଗାନ୍ଧୀ'ଙ୍କ ଜୀବନରେ ଆଜି ଫୁଟିଅଛି, ସେହିପରି ମାତାଙ୍କର ସ୍ନେହ, ଦୟା, ଧର୍ମ ଓ କ୍ଷମାଦି ଗୁଣଗୁଡ଼ିକ ମଧ୍ୟ ତାହାଙ୍କ ହୃଦୟରେ ପୂର୍ଣ୍ଣ ହୋଇ ରହିଅଛି ।



# ଦ୍ୱିତୀୟ ଅଧ୍ୟାୟ ।



## ଶିକ୍ଷା ।

ମହାତ୍ମା ଗାନ୍ଧୀ ପିତାମାତାଙ୍କର କନିଷ୍ଠ ସନ୍ତାନ, ସାତବର୍ଷ ପର୍ଯ୍ୟନ୍ତ ସେଥି ପୋରବନ୍ଦରରେ ଗୋଟିଏ ପ୍ରାଥମିକ ପାଠଶାଳାରେ ଅଧ୍ୟୟନ କରିଥିଲେ । ତାହାଙ୍କର ପିତା କର୍ମଚନ୍ଦ୍ର ଗାନ୍ଧୀ ପୋରବନ୍ଦର ତ୍ୟାଗ କରି ଯେତେବେଳେ ରାଜକୋଟକୁ ଆସନ୍ତି, ମୋହନଦାସ ମଧ୍ୟ ତାହାଙ୍କ ସଙ୍ଗରେ ରାଜକୋଟକୁ ଆସିଥିଲେ । ଏହିଠାରେ ସେ ଗୋଟିଏ ଦେଶୀୟ ପାଠଶାଳରେ ଯାଇଁ ବିଦ୍ୟାଭ୍ୟାସ କରିଥିଲେ । ଦଶବର୍ଷ ବୟସ ପରେ କାଠିଆବାଡ଼ର ଉଚ୍ଚ ଇଂରାଜୀ ସ୍କୁଲକୁ ସେ ପ୍ରେରିତ ହେଲେ । ଏହି ସ୍କୁଲରୁ ସେ ୧୭ ବର୍ଷ ବୟସରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହି ସମୟ ମଧ୍ୟରେ ମୋହନଦାସଙ୍କ ଜୀବନରେ ଦୁଇଟି ପ୍ରଧାନ ଘଟନା ଘଟିଲା । ପ୍ରଥମଟି ତାହାଙ୍କର ବିବାହ, ଦ୍ୱିତୀୟଟି ତାହାଙ୍କର ଧର୍ମଭାବରେ ପରିବର୍ତ୍ତନ ।

ବାରବର୍ଷ ବୟସରେ ସେ ପରିଣୟସୂତ୍ରରେ ଆବଦ୍ଧ ହେଲେ । ଏହି ଶୁଭକ୍ରିୟାଟି ପୋରବନ୍ଦରରେ ସମ୍ପାଦିତ ହୋଇଥିଲା । ବିବାହ ପୂର୍ବରୁ କନ୍ୟାଟି ରାଜକୋଟକୁ ଆନୀତା ହୋଇଥିଲେ ଏବଂ ବାଳକ ବାଳିକା ଦୁଇଟି ବାଲ୍ୟକାଳରୁ ଜୀବନର ସଙ୍ଗୀ ହେବାର ସୁବିଧା ପାଇଥିଲେ । ବିବାହ ପୂର୍ବରୁ ମଧ୍ୟ ଖେଳ କୌତୁକ ଇତ୍ୟାଦିରେ ଦୁହିଙ୍କର ମିଳନ ହେଉଥିଲା । ପରିଣୟର ଉତ୍ସବଟି ବଡ଼ ଆଡ଼ମ୍ବର ସହକାରେ ସମ୍ପାଦିତ ହୋଇଥିଲା । ବର କନ୍ୟା ଉଭୟେ ଶିଶୁ । ମହାତ୍ମା ଗାନ୍ଧୀ ବାଲ୍ୟ ବିବାହର ବଡ଼ ବିରୋଧୀ । ତଥାପି ସେ କହନ୍ତି, ମନୁଷ୍ୟର ସ୍ୱଭାବ ଓ ଚରିତ୍ର ଗଠନ ହେବା ପୂର୍ବରୁ ଯଦି ଏରୂପ ଦୁଇଟି ଆତ୍ମାର ମିଳନ ହୁଏ, ତାହା ହେଲେ ସେମାନଙ୍କ ଏହି

ଦେଇ ଆଦର୍ଶ ଜୀବନ ଗଠନରେ ଯେପରି ସୁବିଧା ମିଳି ପାରେ, ଜୀବନର ଅନ୍ୟ କୌଣସି ଅବସ୍ଥାରେ ସେପରି ସୁବିଧା ଆଉ ମିଳି ପାରେ ନାହିଁ । ଏହି କଥାଟି ତାହାଙ୍କର ଜୀବନରେ ଫଳିଅଛି । ତାହାଙ୍କର ସ୍ତ୍ରୀ ମଧ୍ୟ ଅଜି ଜଣେ ଆଦର୍ଶ ନାରୀ ।

ମହାତ୍ମା ଗାନ୍ଧୀ ବିଦ୍ୟାଳୟରେ ଯେତେବେଳେ ଉଚ୍ଚ ଶ୍ରେଣୀରେ ଅଧ୍ୟୟନ କରନ୍ତି, ସେତେବେଳେ ଏହି ପାଶ୍ଚାତ୍ୟ ଶିକ୍ଷା ଓ ପାଶ୍ଚାତ୍ୟ ସଭ୍ୟତା ତାହାଙ୍କ ମନରେ ନିଜ ଧର୍ମ ପ୍ରତି ଟିକିଏ ସନ୍ଦେହ ଜନ୍ମାଇଥିଲା । ମହାତ୍ମା ଗାନ୍ଧୀଙ୍କର ବଂଶଧରଗଣ ବୈଷ୍ଣବ ଧର୍ମାବଲମ୍ବୀ । ଜୀବହିଂସା ତାହାଙ୍କର ଧର୍ମବିରୁଦ୍ଧ, ନୀତିବିରୁଦ୍ଧ ଓ ଲୋକାଚାରବିରୁଦ୍ଧ । କିନ୍ତୁ ଇଂରାଜୀ ଶିକ୍ଷା ତାହାଙ୍କ ମନରେ ଯେଉଁ ସନ୍ଦେହ ଜାଗ୍ରତ କରିଅଛି, ତଦନୁସାରେ ସେ ଭାବିଲେ ଯେ ଖାଦ୍ୟପେୟରେ ଦୋଷ କେଉଁଠାରେ ? ଯାହା ଅନ୍ୟ ଲୋକେ ଆନନ୍ଦ ସହକାରେ ଭୋଜନ କରେ, ତାହା ମୁଁ ଯଦି ଭୋଜନ କରେ, ମୋର ଅଧର୍ମ ହେବ କିପରି ? ଏହିପରି ଭାବ ତାହାଙ୍କ ମନରେ ବାରମ୍ବାର ଉଦିତ ହେବାକୁ ଲାଗିଲା । ତାହାଙ୍କର କେତେ ସହାଧ୍ୟାୟୀମାନଙ୍କର ମଧ୍ୟ ଏହିରୂପ ଭାବ । ସେମାନେ ତର୍କ ବିତର୍କ କରି ଠିକ୍ କଲେ, ମାଛ ମାଂସ ଭୋଜନରେ କୌଣସି ଅଧର୍ମ ନାହିଁ । ଇଂରେଜମାନେ ମାଂସ ଖାନ୍ତି, ସୁତରାଂ ସେମାନେ ଅତି ବଳିଷ୍ଠ ସଭ୍ୟ ଓ ସ୍ୱାଧୀନ ଜାତିରୂପେ ପରିଚିତ । ଜଗତରେ କେଡେବଡ଼ ଆଧିପତ୍ୟ ବିସ୍ତାର କରି ବସି ଅଛନ୍ତି । ମାଂସଭୋଜନଦ୍ୱାରା ଯଦି ସେମାନଙ୍କର ଅଧର୍ମ ନ ହେଲା, ଅନ୍ୟର ବା ଅଧର୍ମ ହେବ କିପରି ? ଏହିପରି ଚିନ୍ତା କଲା ପରେ ବାଳକ ମୋହନଦାସ ନିରାମିଷ ଭୋଜନବାଦକୁ କୁସଂସ୍କାର ବୋଲି ମନେ କରି ତାହା ଦୂରୀଭୂତ କରିବା ସକାଶେ ଯତ୍ନବାନ ହେଲେ । ପାଞ୍ଚ ଛଅ ଜଣ ସହାଧ୍ୟାୟୀଙ୍କ ସହିତ ମିଳି ନଦୀତୀରରେ କୌଣସି ଗୋଟିଏ ନିଭୃତ ସ୍ଥାନରେ ମାଂସ ଆହାର କରିବାକୁ ଆରମ୍ଭ କଲେ । ସେ ଦେଖିଲେ ଯେ, ସ୍କୁଲର କେତେ ଜଣ ଶିକ୍ଷକ ମଧ୍ୟ ମାଂସ

ଆହାର କରନ୍ତୁ, ସୁତରାଂ ତାହାଙ୍କର ଭୟର କୌଣସି କାରଣ ରହିଲା ନାହିଁ-ଏହି ଘରେ ସମସ୍ତଙ୍କୁ ଲୁଚାଇ ବାଳକ ମୋହନଦାସ ଏହିପରି ମାଂସ ଭୋଜନ କରିବାକୁ ଲାଗିଲେ । ମାଂସ ଭୋଜନ କଲେ ସତ୍ୟ, କିନ୍ତୁ ତାହାଙ୍କର ମ... ଆନନ୍ଦଭାବ ଆଉ ସେପରି ରହିଲା ନାହିଁ । ମାତା ଯଦି ଏହି କଥା କୌଣସି ପ୍ରକାରେ ଶୁଣି ପାରନ୍ତି, ତାହା ହେଲେ ତାହାଙ୍କର ହୃଦୟ ଦଗ୍ଧ ହୋଇ ଉଠିବ । ସର୍ବଦା ଗୋଟାଏ ଅନ୍ୟାୟ କାର୍ଯ୍ୟକୁ ଲୁଚାଇ ରଖିବା ସହଜ ନୁହେ, ସେ ଯେଉଁ ଦିନ ମାଂସ ଭୋଜନ କରନ୍ତି, ସେ ଦିନ ରାତିରେ ଭୋଜନର ପରିମାଣ କମିଯାଏ । ଅଳ୍ପ ଆହାରର କାରଣ ମାତା ପଚାରିଲେ କୌଣସି ପ୍ରକାରେ ଗୋଟାଏ ମିଛ କହି ତାଙ୍କୁ ଭୁଲାଇ ଦିଅନ୍ତି । କିନ୍ତୁ ଏପରି କେତେ ଦିନ ଚଳିବ ? ମିଥ୍ୟା କହିବାକୁ ଗାନ୍ଧୀଙ୍କର ମନ ଡାକୁ ନ ଥାଏ । ସେ ସର୍ବଦା ପ୍ରାଣରେ ଗୋଟାଏ ବେଦନା ଅନୁଭବ କରୁଥାନ୍ତି । ସତ୍ୟ କହିବା ଅଭ୍ୟାସ ଥିବାରୁ ବାଳକ ମୋହନଦାସ ମାତାଙ୍କ ଆଗରେ ମିଥ୍ୟା କହି ପାରନ୍ତି ନାହିଁ । ସୁତରାଂ ସେ ଦିନକୁଦିନ ପ୍ରାଣରେ ତୀବ୍ର ବେଦନା ଅନୁଭବ କରିବାକୁ ଲାଗିଲେ । ଅନୁତାପରେ ତାହାଙ୍କର ହୃଦୟ ଜଳି ଉଠିଲା । ଶେଷରେ ବୁଝି ପାରିଲେ ଯେ ମାଂସାହାର ପ୍ରକୃତ ଗୋଟିଏ ଅଧର୍ମର କାର୍ଯ୍ୟ । ସେହି ଦିନଠାରୁ ସେ ମାଂସାହାର ପରିତ୍ୟାଗ କଲେ । ଅଦ୍ୟାବଧି ସେ ଦିନକପାଇଁ ଭୁଲରେ ସୁଦ୍ଧା ମାଛ ମାଂସ ସ୍ପର୍ଶ କରି ନାହାନ୍ତି ।

ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମୋହନଦାସ ଭବନଗର କଲେଜରେ ଭର୍ତ୍ତି ହେଲେ । ଏହି କଲେଜରେ ଅଧ୍ୟୟନ କାଳରେ ତାହାଙ୍କର ଜଣେ ବ୍ରାହ୍ମଣ ବନ୍ଧୁ ତାହାଙ୍କୁ ଉପଦେଶ ଦେଲେ ଯେ, ଏଠାରେ ପଢ଼ି କୌଣସି ଲାଭ ନାହିଁ । ସେ ଯଦି ବିଲାତ ଯାଇଁ ବାରିଷ୍ଟର ପାସ କରିବେ, ତାହା ହେଲେ ପିତାଙ୍କ ପରି ସମ୍ମାନର ପାତ୍ର ହୋଇ ପାରିବେ ପ୍ରକୃତରେ ଦେଶର ମଧ୍ୟ କିଛି କଲ୍ୟାଣ ସାଧନ କରି ପାରିବେ । ଭାରତ

ନ୍ତରରେ କୌଣସି କଲେଜରେ ପଢ଼ି ଉପାଧି ଲାଭ କରିବାରେ କୌଣସି ଲାଭ ନାହିଁ । କଥାଟା ମୋହନଦାସଙ୍କ ମନକୁ ପାଇଲା । ବିଦେଶ ଗଲେ ସେ କେତେ କଥା ଜାଣିବେ ଓ କେତେ ଦେଶ ଦେଖିବେ । ସୁତରାଂ ବିଲାତ ଯିବାକୁ ସେ ଦୃଢ଼ ସଂକଳ୍ପ କଲେ, କିନ୍ତୁ ଏଥିରେ ମାତା ଓ ଭ୍ରାତାଙ୍କର ଅନୁମତି ଆବଶ୍ୟକ । ପିତା ସେତେବେଳେ ପରଲୋକରେ, ଭ୍ରାତା ଅନୁମତି ଦେଇ ପାରନ୍ତି, କିନ୍ତୁ ଏ ବିଷୟରେ ମାତାଙ୍କର ଅନୁମତି ପାଇବା ବଡ଼ କଠିନ ।

ମୋହନଦାସଙ୍କର ଏହି ପ୍ରସ୍ତାବ ମାତା ଶୁଣିବା ମାତ୍ରେ ତାହାଙ୍କ ହୃଦୟରେ କୁଠାରାଘାତ ହୋଇଗଲା । ସେ ଜଣେ ହିନ୍ଦୁନାରୀ, ସେ ଭାବିଥିଲେ ବିଲାତ ଗଲେ ମୋହନର ଧର୍ମ କର୍ମ ସମସ୍ତ ଭ୍ରଷ୍ଟ ହୋଇଯିବ । ତାହାଙ୍କର ବିଶ୍ୱାସ, ବିଲାତ ଗଲେ ମନୁଷ୍ୟ ଅଖାଦ୍ୟ ଭୋଜନ କରେ, ସୁତରାଂ ସେ ଏ ପ୍ରସ୍ତାବରେ ସମ୍ମତି ଦେଲେ ନାହିଁ । କିନ୍ତୁ ମୋହନଦାସ ବାରମ୍ବାର ପ୍ରାର୍ଥନା କରିବାକୁ ଲାଗିଲେ । ସନ୍ତାନର ବାରମ୍ବାର ପ୍ରାର୍ଥନାରେ ମାତାଙ୍କ ହୃଦୟ ବିଗଳିତ ହେଲା, ସେ ବିଲାତ ଯିବାର ପ୍ରସ୍ତାବରେ ଅନୁମତି ଦେଲେ ସତ୍ୟ, କିନ୍ତୁ ଜଣେ ଜୈନ ସନ୍ନ୍ୟାସିଙ୍କୁ ଡକାଇ ସନ୍ତାନଠାରୁ ତିନୋଟି ପଣ କରାଇ ନେଲେ । ପଣ ତିନୋଟି ଏହି :—ସେ ବିଲାତ ଗଲେ ମଦ୍ୟ, ମାଂସ ଓ ସ୍ତ୍ରୀ ସ୍ପର୍ଶ କରିବେ ନାହିଁ । ଏହି ତିନୋଟି ପଣରେ ଆବଦ୍ଧ ହୋଇ ସେ ଇଂଲଣ୍ଡ ଯିବାର ଆୟୋଜନରେ ଲାଗିଲେ । କିନ୍ତୁ ତାହାଙ୍କର କେତେକ ଆତ୍ମୀୟ ସ୍ୱଜନ ତାଙ୍କର ଏ ପ୍ରସ୍ତାବର ବିରୋଧୀ ହୋଇ କହିଲେ ଯେ, ମୋହନଦାସ ଯଦି ବିଲାତ ଯାନ୍ତି, ସେ ଜାତିଚ୍ୟୁତ ହେବେ । ସେହି ଦିନରୁ ସେ ଆଜିପର୍ଯ୍ୟନ୍ତ ଜାତିଚ୍ୟୁତ ହୋଇ ରହିଅଛନ୍ତି । ସେ ଯାହା ହେଉ ବିଲାତ ଯିବାର ଦିନ ନିର୍ଦ୍ଧାରିତ ହେଲା । ନିର୍ଦ୍ଦିଷ୍ଟ ଦିନରେ ମୋହନଦାସ ମାତାଙ୍କର ଚରଣଧୂଳି ମସ୍ତକରେ ଧାରଣ କରି ବିଲାତ ଯାତ୍ରୀ ହୋଇଥିଲେ । ୧୮୮୮ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ମୋହନଦାସ ୧୯ ବର୍ଷ ବୟସରେ

ବିଲାତର ରାଜଧାନୀ ବିଳାସ ଓ ଆଧୁନିକ ସଭ୍ୟତାର ଲୀଳାଭୂମି ଲଣ୍ଡନ ନଗରୀରେ ଉପସ୍ଥିତ ହେଲେ, ସେଠାରେ ଭିକ୍ଟୋରିଆ ହୋଟେଲ ନାମକ ଗୋଟିଏ ବାସଗୃହରେ ଅନ୍ୟ ଦୁଇ ସହଯାତ୍ରୀଙ୍କ ସହିତ ବାସ କଲେ ।

ବିଲାତର କ୍ରିୟାକଳାପ ଓ ଆଚାର ବ୍ୟବହାର ଭାରତୀୟ ଆଚାର ବ୍ୟବହାରଠାରୁ ପୃଥକ୍, ଏହି କଥା ଅଳ୍ପ ଦିନ ମଧ୍ୟରେ ବାଳକ ମୋହନ-ଦାସଙ୍କୁ ବୋଧ ହେଲା । ସ୍ୱାଧୀନ ଦେଶ, ସ୍ୱାଧୀନ ଜାତି ଓ ସ୍ୱାଧୀନ ଲୋକଙ୍କ ଆଚାର ବ୍ୟବହାର ତାହାଙ୍କ କୋମଳହୃଦୟକୁ ମୁଗ୍ଧ କରିଦେଲା । ଯେଉଁଠାରେ ଘରେ, ବାହାରେ, ବନରେ, ପର୍ବତରେ ସର୍ବତ୍ର ସ୍ୱାଧୀନତାର ବାୟୁ ପ୍ରବାହିତ ହେଉଅଛି ଯେଉଁଠାରେ କର୍ମମୟ ଜୀବନର ସ୍ରୋତ ଚଞ୍ଚଳ ଗତିରେ ବହୁଅଛି, ସେଠାରେ ଯେ କୌଣସି ଭାରତୀୟ ଛାତ୍ରର ମନ ଯେ ଶୀଘ୍ର ପରିବର୍ତ୍ତିତ ହେବ, ତହିଁରେ ଆଶ୍ଚର୍ଯ୍ୟ କଅଣ ? ଫଳରେ ମୋହନଦାସ ବିଲାତର ଆଚାର ବ୍ୟବହାର ଅନୁକରଣ କରିବାକୁ ଲାଗିଲେ । ଅଳ୍ପଦିନ ମଧ୍ୟରେ କେତେକ ସହାଧ୍ୟାୟୀମାନଙ୍କ ସାହାଯ୍ୟରେ ଇଂରାଜୀ ସାମାଜିକ ରୀତି ଅନୁଯାୟୀ ବେଶଭୂଷା ଓ ଚାଲି ଚଳନ ସମସ୍ତ ଅଭ୍ୟସ୍ତ କଲେ । ୟୁରୋପର ପ୍ରଥା ଅନୁସାରେ ନାଚ ଗାନ ଶିଖିବାକୁ ଗୋଟିଏ ବେହେଲା କ୍ରୟ କଲେ । ସେହି ସମୟରେ ସେଠାରେ ତାହାଙ୍କର ଜଣେ ବନ୍ଧୁ ଥିଲେ, ସେ ବେଶଭୂଷା ଇତ୍ୟାଦିରେ ପୂର୍ଣ୍ଣ ସାହେବ, ମୋହନଦାସ ତାହାଙ୍କର ଏହି ସାହେବ ବନ୍ଧୁଙ୍କ ନିକଟରେ ନୃତ୍ୟ ଗୀତ ଶିକ୍ଷା କରିବାପାଇଁ ପ୍ରତ୍ୟହ ଯାନ୍ତି ।

କିନ୍ତୁ ମାତାଙ୍କ ନିକଟରେ ସେ ଯେଉଁ ପ୍ରତିଜ୍ଞାରେ ଆବଦ୍ଧ ହୋଇ-ଥିଲେ, ତାହାର କୌଣସି ପ୍ରକାର ବ୍ୟତିକ୍ରମ ଏ ପର୍ଯ୍ୟନ୍ତ ଘଟି ନାହିଁ । ମଦ୍ୟ, ମାଂସ ଓ ରମଣୀ ଏହି ତିନୋଟି ଲୋଭଜନକ ପଦାର୍ଥରୁ ସେ ସର୍ବଦା ନିଜକୁ ଦୂରରେ ରଖିଥାନ୍ତି । ତାହାଙ୍କ ଉକ୍ତ ସାହେବ ବନ୍ଧୁଟି ଏଥିପାଇଁ ପ୍ରାୟ ପ୍ରତ୍ୟହ ତାହାଙ୍କ ଉପରେ ବିରକ୍ତ ହୁଅନ୍ତି । କୌଣସି ବିଷୟ ଶପଥ କରି ବିଲାତ ଆସିବା

ପିତାଙ୍କ ନିର୍ବୋଧତାର ପରିଚୟ ଦିଏ । ଇତ୍ୟାଦି ପ୍ରକାର ବର୍ଣ୍ଣନା ମୋହନଦାସଙ୍କ ପ୍ରତ୍ୟହ ତାହାଙ୍କ ବନ୍ଧୁଙ୍କ ନିକଟରୁ ଶୁଣିବାକୁ ପଡ଼େ ।

କିନ୍ତୁ ବାଳକ ମୋହନଦାସ ନିଜ ପ୍ରତିଜ୍ଞା କଦାପି ଭ୍ରଷ୍ଟ କରନ୍ତି ନାହିଁ । ଦିନେ ତାହାଙ୍କର କେତେଗୁଡ଼ିଏ ବନ୍ଧୁଙ୍କ ସହିତ ସେ ଜଣେକ ବନ୍ଧୁଙ୍କ ଗୃହକୁ ରାତ୍ରଭୋଜନ ନିମିତ୍ତ ନିମନ୍ତ୍ରିତ ହୋଇଥିଲେ । ଉକ୍ତ ବନ୍ଧୁଟି ଏହି ଭୋଜନ ନିମିତ୍ତ ବିରାଟ ଆୟୋଜନ କରିଥିଲେ । ନୃତ୍ୟ ଗୀତର ଆୟୋଜନ ମଧ୍ୟ ଯଥେଷ୍ଟ ହୋଇଥିଲା । ଯେଉଁ ବନ୍ଧୁଟି ନିମନ୍ତ୍ରଣ କରିଥିଲେ, ସେ ଭଲରୂପେ ଜାଣିଥିଲେ ଯେ—ମୋହନଦାସ ସୁରା, ମାଂସ ଓ ରମଣୀଠାରୁ ଦୂରରେ ଥାନ୍ତି ; ତଥାପି ଭୋଜନ ସମୟରେ କୌଣସି ଭଦ୍ରବ୍ୟକ୍ତି ଏସବୁ ବିଷୟରେ ପ୍ରଶ୍ନ କରେ ନାହିଁ ଏବଂ ବିଲାତର ସାମାଜିକ ପ୍ରଥା ଅନୁସାରେ ଟେବୁଲ ଉପରେ ଖାଇବା ସମୟରେ ଏହିପରି କୌଣସି ପ୍ରଶ୍ନ ପଚାରିବା ଭଦ୍ରୋଚିତ କାର୍ଯ୍ୟ ବୋଲି ବିବେଚିତ ହୁଏ ନାହିଁ, ଏହା ଜାଣି ଆମନ୍ତ୍ରଣକାରୀ ବନ୍ଧୁଟି ମୋହନଦାସଙ୍କୁ ଭୋଜନ ବିଷୟରେ କୌଣସି ପ୍ରଶ୍ନ ନ କରି ନିଶ୍ଚିନ୍ତ ରହିଲେ । ଭୋଜନ ସ୍ଥାନରେ ବସି ଗାନ୍ଧୀ ପଚାରିଲେ, "ଏହା ଆମିଷ କି ନିରାମିଷ ?" ତାହାଙ୍କୁ ଏପରି ପ୍ରଶ୍ନ କରିବାର ଦେଖି ତାଙ୍କର ବନ୍ଧୁ ଏହାର କାରଣ ପଚାରିଥିଲେ । ଗାନ୍ଧୀ ଉତ୍ତର ଦେଲେ, "ମୁଁ ମାଂସ ସ୍ପର୍ଶ କରେ ନାହିଁ । ସୁତରାଂ ଏ ଖାଦ୍ୟରେ ମାଂସାଦି ଅଛି କି ନାହିଁ ତାହା ଜାଣିବାକୁ ଇଚ୍ଛା । ଭୋଜଦାତା ଏଥିରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଗାନ୍ଧୀଙ୍କୁ କହିଥିଲେ, "ତୁମ୍ଭେ ଭଦ୍ରସମାଜରେ ବସିବାର ପାତ୍ର ନୁହଁ, ଭଦ୍ରସମାଜରେ ଯଦି ଭଦ୍ର ବ୍ୟବହାର କରି ନ ପାର, ସେଠାରେ ରହିବା ତୁମ୍ଭର ଉଚିତ ନୁହେ ।" ଗାନ୍ଧୀ ତତ୍‌କ୍ଷଣାତ୍ ସେହି ନିମନ୍ତ୍ରଣସଭା ଛାଡ଼ି ଚାଲିଗଲେ । ସେହି ଦିନଠାରୁ ସେ ବିଲାତର ଆଚାର ବ୍ୟବହାର ଶିଖି ବିଲାତି ଭଦ୍ରଲୋକ ସାଜିବାର ଆକାଂକ୍ଷା ଏକାବେଳକେ ତ୍ୟାଗ କଲେ ।

ସେ ବୁଝିଥିଲେ ଯେ, ସେ କେବଳ ବୃଥା ମରୀଚିକାର ପଛରେ ଧାଁଉଛି ହେଉଅଛନ୍ତି । ବିଲାତ ବିଳାସିତାର ମୋହ, ୟୁରୋପୀୟ ସଭ୍ୟତାର ଚାକଚକ୍ୟ ଇତ୍ୟାଦିର ପରିଣାମ ଭାରତବାସିର ଜୀବନରେ କଦାପି ସୁଖପ୍ରଦ ହେବ ନାହିଁ । ଏହି ଚିନ୍ତା ତାହାଙ୍କ ମନରେ ଆସି ଉପସ୍ଥିତ ହେଲା । ସେ ଯାହାକୁ ଆଦର୍ଶ ବୋଲି ଗ୍ରହଣ କରିବାକୁ ଦୌଡିଥିଲେ, ତହିଁରୁ ନିବୃତ୍ତ ହେଲେ । ଆଉ ବୃଥାରେ ନିଜର ଅର୍ଥ ଓ ସମୟ ବ୍ୟୟ କରିବେ ନାହିଁ ବୋଲି ସଂକଳ୍ପ କଲେ । ମୋହନଦାସ ମୋହପାଶ ଛିନ୍ନ କରି ଜାଗ୍ରତ ହେଲେ, ବେହେଲା ଖଣ୍ଡି ବିକ୍ରୟ କଲେ । ନୃତ୍ୟ ଗୀତ ନିକଟରୁ ଚିର ବିଦାୟ ନେଇ ଅଭିନିବେଶ ସହକାରେ ବାରିଷ୍ଟର ପଢ଼ିବାରେ ଲାଗିଗଲେ ଲଣ୍ଡନରେ ତାହାଙ୍କୁ ଗୋଟିଏ ପ୍ରବେଶିକା ପରୀକ୍ଷା ଦେବାକୁ ପଡ଼ିଥିଲା ଏଥିପାଇଁ ତାହାଙ୍କୁ ଅଧିକ ବିଦ୍ୟାଭ୍ୟାସ କରିବାକୁ ପଡ଼ୁଥାଏ । ଗାନ୍ଧୀ ଏଣିକି ବ୍ରହ୍ମଚର୍ଯ୍ୟର କଠିନ ନିୟମରେ ଅନୁବର୍ତ୍ତିତ ହୋଇ ନିଜର ଜୀବନଯାତ୍ରା ନିର୍ବାହ କଲେ । ନିଜେ ଗୋଟିଏ ସ୍ୱତନ୍ତ୍ର ଗୃହ ଭଡ଼ା ନେଇ ନିଜ ହାତରେ ରୋଷାଇ କରି ଅତି ସରଳ ଭାବରେ ଛାତ୍ରଜୀବନ କଟାଇବାକୁ ଲାଗିଲେ । ଏହି ସମୟରେ ଲଣ୍ଡନ ସହରରେ ପ୍ରାୟ ୫ ଟଙ୍କାରେ ସେ ସମସ୍ତ ବ୍ୟୟ ନିର୍ବାହ କରୁଥିଲେ । ଏହିପରି ଭାବରେ ତିନିବର୍ଷ କାଳ ଗାନ୍ଧୀ ବିଲାତରେ କଟାଇଲେ ।

ଏହି ତିନି ବର୍ଷ ମଧ୍ୟରେ ଗାନ୍ଧୀ ନିଜ ଧର୍ମମତ କିଛି ପ୍ରକାଶ କରି ନାହାନ୍ତି । ଇଂରାଜୀ ସ୍କୁଲରେ ପଢ଼ିବା ସମୟରୁ ହିନ୍ଦୁଧର୍ମ ବିଷୟରେ ଗୋଟିଏ ପ୍ରଶ୍ନ ତାହାଙ୍କ ହୃଦୟରେ ଜାଗ୍ରତ ହୋଇଥିଲା । ଇଂରାଜୀ ଶିକ୍ଷାର ପ୍ରଭାବ ହେତୁ ସମୟ ସମୟରେ ଈଶ୍ୱରବାଦ ବିରୁଦ୍ଧରେ ତାହାଙ୍କର ମନ ଆଲୋଡ଼ିତ ହେଉଥିଲା । ତାହାଙ୍କର ବାଳକ ହୃଦୟରେ ଗୋଟିଏ ଅସ୍ପଷ୍ଟ ଧାରଣା ଜନ୍ମି ଥିଲା ଯେ, ହିନ୍ଦୁଧର୍ମ କହିଲେ କେବଳ ପିତୁଳା ବା ମୂର୍ତ୍ତି ପୂଜା ମାତ୍ର । ସେ ଧାରଣା ଯଥାର୍ଥ କି ନା, ତାହା ପରୀକ୍ଷା କରି ସେ ଏ ପର୍ଯ୍ୟନ୍ତ ଦେଖି ନାହାନ୍ତି । ବର୍ତ୍ତମାନ ସୁଦ୍ଧା ଧର୍ମସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ଅଜ୍ଞ, ସୁତରାଂ ହିନ୍ଦୁଧର୍ମକୁ

ଅସାର ବୋଲି ମାନି ନେବାକୁ ତାହାଙ୍କର ମନ କହୁ ନାହିଁ । ବର୍ତ୍ତମାନ ସେ ଖ୍ରୀଷ୍ଟଧର୍ମ ମଧ୍ୟରେ ଯାଇ ରହିଅଛନ୍ତି । କିନ୍ତୁ ଏହି ବାଳକ ତପସ୍ୱୀ ଗାନ୍ଧୀ କୌଣସି ପ୍ରକାରେ ବିଚଳିତ ହେଲେ ନାହିଁ । ସେ ନିରାମିଷଭୋଜୀ ଥିବାରୁ ବିଲାତରେ ବହୁ ନିରାମିଷଭୋଜୀ ଭଦ୍ରବ୍ୟକ୍ତିଙ୍କ ସହିତ ତାହାଙ୍କର ଆଳାପ ହୋଇ ଥିଲା । ପରସ୍ପର ମଧ୍ୟରେ ସାକ୍ଷାତ୍ ହେଲେ ଧର୍ମ ବିଷୟ ନେଇ ତର୍କ ବିତର୍କ ଚଳେ । ଏହି ତର୍କ ବିତର୍କରୁ ଗାନ୍ଧୀ ବୁଝି ପାରିଲେ, ସେ ଧର୍ମ ବିଷୟରେ କେତେ ଅନଭିଜ୍ଞ । ହିନ୍ଦୁଧର୍ମ ଯେ କଅଣ, ସେ ତାହା ସ୍ପଷ୍ଟ ବୁଝି ପାରି ନାହାନ୍ତି । ତାହାଙ୍କର ନିରାମିଷାଶୀ ବନ୍ଧୁମାନଙ୍କ ମଧ୍ୟରୁ ଜଣେ ଇଂରେଜ ଭଦ୍ରବ୍ୟକ୍ତି ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ସକାଶେ ତାହାଙ୍କୁ ଅନୁରୋଧ କରିଥିଲେ ତାହାଙ୍କର ଏହି ଅନୁରୋଧ ଶୁଣି ଗାନ୍ଧୀ ଉତ୍ତରରେ କହିଲେ, "ଯେପର୍ଯ୍ୟନ୍ତ ମୁଁ ନିଜ ଧର୍ମରେ ଅଭିଜ୍ଞତା ଲାଭ କରି ନାହିଁ, ସେ ପର୍ଯ୍ୟନ୍ତ ଖ୍ରୀଷ୍ଟଧର୍ମ ବିଷୟରେ କୌଣସି ତତ୍ତ୍ୱ ଜାଣିବାକୁ ଇଚ୍ଛା କରେ ନାହିଁ । ଉକ୍ତ ଇଂରାଜ ଭଦ୍ରବ୍ୟକ୍ତିଟି ଗାନ୍ଧୀଙ୍କର ଏହି ଉତ୍ତରର ପ୍ରତିବାଦ କଲେ ନାହିଁ ସତ୍ୟ, କିନ୍ତୁ ଖ୍ରୀଷ୍ଟଧର୍ମ ଆଲୋଚନାରୁ କ୍ଷାନ୍ତ ହୋଇଥିଲେ ।

ଏହି ସମାଲୋଚନାର ଫଳରେ ଗାନ୍ଧୀ ଧର୍ମଜ୍ଞାନ ଲାଭ କରିବା ସକାଶେ ଅଧୀର ହୋଇ ଉଠିଲେ । ଅନେକ ଧର୍ମଗ୍ରନ୍ଥ ପାଠ କରିବାକୁ ଆରମ୍ଭ କଲେ, କାହିଁରେ ତାହାଙ୍କର ଜ୍ଞାନପିପାସାର ନିବୃତ୍ତି ହେଲା ନାହିଁ । ଶେଷରେ ସେ ଭଗବଦ୍‌ଗୀତା ପାଠ ଅଭ୍ୟାସ କଲେ । ଏହି ଗୀତାକୁ ଯେତେ ଅଧ୍ୟୟନ କରିବାକୁ ଲାଗିଲେ, ତାହାଙ୍କର ଜ୍ଞାନପିପାସା ତେତେ ମେଣ୍ଟିବାକୁ ଲାଗିଲା ଗୋଟିଏ ଗୋଟିଏ ଶ୍ଲୋକର ବ୍ୟାଖ୍ୟା ପାଠ କରୁ କରୁ ତାହାଙ୍କର ହୃଦୟ ଆନନ୍ଦରେ ପୂରି ଉଠିଲା ।

ତାଙ୍କର ମନେ ହେଉଥାଏ, ସତେ ଯେପରି ସେ ସ୍ୱର୍ଗୀୟ ସୁଖ ଅନୁଭବ କରୁଅଛନ୍ତି । କ୍ରମଶଃ ତାହାଙ୍କର ଅଜ୍ଞାନ-ଅନ୍ଧକାର ଦୂରୀଭୂତ ହେବାକୁ

ଲାଗିଲା ଏବଂ ତାହାଙ୍କ ଜୀବନର ଗତି ପରିବର୍ତ୍ତିତ ହେବାକୁ ଆରମ୍ଭ ହେଲା । ସେ ଜୀବନର ଆଦର୍ଶ କଣ ଏହା ଭଲରୂପେ ଉପଲବ୍ଧି କରିପାରିଲେ ।

ଠିକ ଏହି ସମୟରେ ମାଞ୍ଚେଷ୍ଟର ନଗରର ଜଣେକ ଭଦ୍ରଲୋକଙ୍କ ସହିତ ତାହାଙ୍କର ପରିଚୟ ହୋଇଥିଲା । ଏହି ଭଦ୍ରବ୍ୟକ୍ତି ଗାନ୍ଧୀଙ୍କୁ ଖ୍ରୀଷ୍ଟ-ଧର୍ମରେ ଦୀକ୍ଷିତ କରିବାକୁ ବିଶେଷ ଯତ୍ନ କରିଥିଲେ । ପ୍ରଥମେ ନାନାପ୍ରକାର ତର୍କ ବିତର୍କ କରି ଖ୍ରୀଷ୍ଟଧର୍ମରେ ତାହାଙ୍କର ବିଶ୍ୱାସ ଜନ୍ମାଇବା ସକାଶେ ଯଥାସାଧ୍ୟ ଚେଷ୍ଟା କଲେ । ଶେଷରେ ତାଙ୍କୁ ଏକ ପ୍ରତିଜ୍ଞାବନ୍ଧନରେ ଆବଦ୍ଧ କଲେ, ସେ ଥରେ ବାଇବେଲ ପାଠ କରିବେ । ଖଣ୍ଡେ ବାଇବେଲ ଗ୍ରନ୍ଥ ମଧ୍ୟ ତାଙ୍କୁ ଉପହାର ଦେଲେ, କିନ୍ତୁ କେଉଁ ଅଂଶ ପଢ଼ିବାକୁ ହେବ, ତାହା କିଛି କହି ଦେଇ ନ ଥିଲେ । ସୁତରାଂ ଗାନ୍ଧୀ ଗ୍ରନ୍ଥଖଣ୍ଡି ଆଦିରୁ ପଢ଼ିବାକୁ ଆରମ୍ଭ କଲେ । ତାହାଙ୍କର ହୃଦୟର ଜ୍ଞାନପିପାସା ମେଣ୍ଟିବାର ଉପାଦାନ ସେ ତହିଁରୁ କିଛି ପାଇଲେ ନାହିଁ । ସୁତରାଂ ବଡ଼ ନିରୁତ୍ସାହ ହୋଇ ବାଇବେଲ ଅଧ୍ୟୟନରୁ ନିବୃତ୍ତ ହେଲେ । ବିଲାତରେ ଅବସ୍ଥାନ ସମୟରେ ଖ୍ରୀଷ୍ଟଧର୍ମ-ମନ୍ଦିରକୁ ଯାଇ ଅନେକ ବକ୍ତୃତା ଶୁଣିଲେ ସତ୍ୟ, କିନ୍ତୁ ପ୍ରଚାରକମାନଙ୍କ ବକ୍ତୃତାରୁ ସେ ବିଶେଷ କିଛି ଉପକୃତ ହେଲେ ନାହିଁ । ଏଣେ ତାହାଙ୍କର ବାରିଷ୍ଟର ପରୀକ୍ଷା ସମୟ ଉପସ୍ଥିତ ହେଲା, ଗାନ୍ଧୀ ତହିଁରେ ଉତ୍ତୀର୍ଣ୍ଣ ହୋଇ ଭାରତବର୍ଷକୁ ପ୍ରତ୍ୟାବର୍ତ୍ତନ କଲେ ।



# ତୃତୀୟ ଅଧ୍ୟାୟ ।



## ( କାର୍ଯ୍ୟାରମ୍ଭ )

ଗାନ୍ଧୀ ବାରିଷ୍ଟର ପାଶ କରି ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ଇତିମଧ୍ୟରେ ତାହାଙ୍କର ସ୍ନେହମୟୀ ମାତୃଦେବୀଙ୍କର ଇହଲୀଳା ସାଙ୍ଗ ହୋଇଅଛି । ଏହି ସମ୍ବାଦ ତାହାଙ୍କର ଆତ୍ମୀୟଗଣ ତାହାଙ୍କ ନିକଟ ବିଲାତକୁ ପଠାଇ ନ ଥିଲେ । ଗାନ୍ଧୀ ଜାହାଜରୁ ଓହ୍ଲାଇଲା ମାତ୍ରକେ ଏହି ଦାରୁଣ ସମ୍ବାଦ ତାହାଙ୍କର କର୍ଣ୍ଣଗୋଚର ହେଲା । ଏଥିରେ ତାହାଙ୍କର ହୃଦୟ ଯେ କି ଅଘାତ ପାଇଥିବ, ତାହା ବର୍ଣ୍ଣନା କରିବା ସହଜ ନୁହେ । ବିଲାତରୁ ଫେରିଲା ପରେ ତାହାଙ୍କର ଜ୍ୟେଷ୍ଠ ଭ୍ରାତା ତାହାଙ୍କୁ ଜାତି କରିବା ନିମିତ୍ତ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ଏକ ପ୍ରାୟଶ୍ଚିତ୍ତ କ୍ରିୟା ଅନୁଷ୍ଠାନ କଲେ । ସମସ୍ତ ଆତ୍ମୀୟ ସ୍ୱଜନ ନିମନ୍ତ୍ରିତ ହୋଇ ତହିଁରେ ଯୋଗ ଦେଲେ । ଏହି ପ୍ରାୟଶ୍ଚିତ୍ତ କ୍ରିୟାଟି ବମ୍ବାଇ ନଗର ନିକଟସ୍ଥ ନାସିକ ନାମକ ଗୋଟିଏ ତୀର୍ଥକ୍ଷେତ୍ରରେ ଅନୁଷ୍ଠିତ ହୋଇଥିଲା ।

ଏହାପରେ ପ୍ରାୟଶ୍ଚିତ୍ତ କ୍ରିୟା ଶେଷ କରି ଗାନ୍ଧୀ ବୋମ୍ବାଇ ହାଇକୋର୍ଟରେ ବାରିଷ୍ଟର ବୃତ୍ତି ଆରମ୍ଭ କଲେ । ଏଣେ ବାରିଷ୍ଟରି କରୁଥାନ୍ତି ଏବଂ ସେଥି ସଙ୍ଗେ ସଙ୍ଗେ ଜଣେକ ଜୈନ ପଣ୍ଡିତଙ୍କ ନିକଟକୁ ଯାଇ ଧର୍ମ-ଆଲୋଚନା ମଧ୍ୟ କରୁଥାନ୍ତି । ଏହାପରେ ଦେଢ଼ ବର୍ଷ କାଳ ଅତିବାହିତ ହୋଇଗଲା । ବର୍ତ୍ତମାନ ତାହାଙ୍କର ଜୀବନର ଗତି ପରିବର୍ତ୍ତନର ଏକ ସୂତ୍ରପାତ ଆରମ୍ଭ ହେଲା । ପୋରବନ୍ଦରନିବାସୀ ଜଣେକ ବଣିକଙ୍କର ଦକ୍ଷିଣଆଫ୍ରିକାର ପ୍ରସିଦ୍ଧ ନଗର ପେଟ୍ରୋରିଆରେ ଗୋଟିଏ ବାଣିଜ୍ୟ ଶାଖା ଥିଲା । ସେହିଠାରେ କୌଣସି ମୋକଦ୍ଦମାରେ ବାରିଷ୍ଟରି କରିବା ସକାଶେ ଏକ ବର୍ଷ ନିମିତ୍ତ ସେ

ଗାନ୍ଧୀଙ୍କୁ ସେଠାକୁ ଯିବାକୁ ଅନୁରୋଧ କଲେ । ଅନେକଗୁଡ଼ିଏ ଭାରତବାସୀ ସେଠାରେ ଏହି ମୋକଦ୍ଦମାରେ ଅଭିଯୁକ୍ତ ଥିଲେ । ତାଙ୍କର ପକ୍ଷ ସମର୍ଥନ କରିବା ସକାଶେ ଗାନ୍ଧୀଙ୍କୁ ବାରିଷ୍ଟର ନେବାକୁ ପଡ଼ିଲା । ଏହି କାର୍ଯ୍ୟଭାର ଗ୍ରହଣ କରି ୧୮୯୩ ଖ୍ରୀଷ୍ଟାବ୍ଦରେ ଗାନ୍ଧୀ ଦକ୍ଷିଣ ଆଫ୍ରିକା ଯାତ୍ରା କଲେ ।

ଦକ୍ଷିଣ ଆଫ୍ରିକାସ୍ଥିତ ନେଟାଲପ୍ରାନ୍ତରେ ଯାଇଁ ଅବତୀର୍ଣ୍ଣ ହେଲେ । ଲଣ୍ଡନ ସହରରେ ଇଂରେଜମାନଙ୍କର ସେ ଯେପରି ସ୍ୱାଧୀନ ପ୍ରକୃତି, ନ୍ୟାୟପରତା ଓ ଉଦାରତାର ପରିଚୟ ପାଇଥିଲେ, ତହିଁରୁ ମନେ କରିଥିଲେ ଯେ, ନେଟାଲର ଇଂରେଜମାନଙ୍କ ନିକଟରେ ସେପରି ବ୍ୟବହାର ଦେଖିବାକୁ ପାଇବେ, କିନ୍ତୁ ତାହାଙ୍କର ଏହି ଆଶା ବିଫଳ ହେଲା । ସେ ହଠାତ୍ କହି ଉଠିଲେ, ମୁଁ ଏଠାକୁ ଆସି ବଡ଼ ଭୁଲ କରିଅଛି ଏବଂ ମହର୍କିଲ-ମାନେ ମଧ୍ୟ ମୋତେ ବଡ଼ ଭୁଲ ବୁଝାଇଅଛନ୍ତି । ଦକ୍ଷିଣ ଆଫ୍ରିକା ଗୋଟିଏ ଅତି ମନୋହର ସ୍ଥାନ, ନାନାପ୍ରକାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଏହା ... ରମଣୀୟ ଦିଶୁଅଛି । ସେହି ସ୍ଥାନର ସୌନ୍ଦର୍ଯ୍ୟ ଦେଖି ଗାନ୍ଧୀଙ୍କ ମନରେ ନିଜର ମାତୃଭୂମିର ଭାବ ଉଦିତ ହେଲା । ଏଣେ ଇଂରେଜମାନଙ୍କୁ ଦେଖି ତାହାଙ୍କର ଲଣ୍ଡନ କଥା ମଧ୍ୟ ମନେ ପଡ଼ିଲା । କିନ୍ତୁ ଲଣ୍ଡନରେ ସେ ସର୍ବ... ସମାଦୃତ ହେଉଥିଲେ, ସବୁଠାରେ ସମାନ ବ୍ୟବହାର ପାଇ ପାରୁଥିଲେ ଏହିପରି ବ୍ୟବହାର ଦକ୍ଷିଣ ଆଫ୍ରିକାସ୍ଥିତ ଇଂରେଜମାନଙ୍କଠାରୁ ଆଶା କରିବା କୌଣସି ଆଶ୍ଚର୍ଯ୍ୟ ବିଷୟ ନୁହେ । କିନ୍ତୁ ଦକ୍ଷିଣ ଆଫ୍ରିକାରେ ଭାରତବାସୀର ସମାଦର ନାହିଁ । ଏଠାରେ ବର୍ଣ୍ଣସମସ୍ୟା ବଡ଼ ଗୁରୁତର, କଳା ଗୋରା ମଧ୍ୟରେ ବଡ଼ ତଫାତ୍ । କଳା-ବ୍ୟକ୍ତି ସବୁଠାରେ ଅନାଦୃତ । ଏହି ଦୃଶ୍ୟ ଦେଖି ଗାନ୍ଧୀଙ୍କ ହୃଦୟରେ ବଡ଼ ବେଦନା ଉପସ୍ଥିତ ହେଲା ।

ସେ ନିଜେ ସମ୍ଭ୍ରାନ୍ତ ବଂଶରେ ଜନ୍ମଗ୍ରହଣ କରିଅଛନ୍ତି । ତାହାଙ୍କର ପିତା ଓ ପିତାମହ ଭାରତର ଦେଶୀୟ ରାଜା ମହାରାଜାମାନଙ୍କ ନିକଟରେ

ମନ୍ତ୍ରୀ କରିଅଛନ୍ତି । ଗାନ୍ଧୀ ବାଲ୍ୟାବସ୍ଥାରେ ରାଜପ୍ରାସାଦର ନାନାପ୍ରକାର ଐଶ୍ୱର୍ଯ୍ୟ ଓ ଭୋଗବିଳାସ ମଧ୍ୟରେ ଜୀବନ ଅତିବାହିତ କରିଅଛନ୍ତି । ଯୌବନର ପ୍ରାରମ୍ଭରେ ସେ ଯେଉଁ ଦେଶରେ ଥିଲେ, ସେଠାରେ ବର୍ଣ୍ଣ-ସମସ୍ୟାର କୌଣସି ଚିହ୍ନ ନ ଥିଲା । ସେ ସର୍ବତ୍ର ବଡ଼ ସମାଦରରେ ଗୃହୀତ ହେଉଥିଲେ । ସେ ନିଜେ ବାରିଷ୍ଟର ପାସ କରିଅଛନ୍ତି । ଏପରି ଅବସ୍ଥାରେ ଦକ୍ଷିଣ ଆଫ୍ରିକାକୁ ଯାଇ ଅପମାନିତ ହେଲେ କାହାର ହୃଦୟ ବ୍ୟଥିତ ନ ହେବ ?

ଗାନ୍ଧୀ ଦକ୍ଷିଣ ଆଫ୍ରିକାର ନେଟାଲରେ ଉପସ୍ଥିତ ହୋଇ ସେଠାର ବିଚାରାଳୟରେ ନିଜର ବାରିଷ୍ଟର ଟୋପି ମୁଣ୍ଡରେ ଦେଇ ମହାମାନ୍ୟମାନଙ୍କର ଏଟର୍ଣ୍ଣିଙ୍କ ନିକଟରେ ଠିଆ ହୋଇଅଛନ୍ତି, ହଠାତ୍ ମସ୍ତକରୁ ଟୋପି କାଢ଼ି ପକାଇବାକୁ ତାହାଙ୍କୁ ଆଦେଶ ହେଲା । ଏହି ଅପମାନ ଗାନ୍ଧୀଙ୍କର ଅସହ୍ୟ ହେଲା, କିନ୍ତୁ ସେ କିଛି ନ କହି ସହ୍ୟ କଲେ । ଯେଉଁ ମୋକଦ୍ଦମା ସକାଶେ ସେ ଦକ୍ଷିଣ ଆଫ୍ରିକା ଯାଇଅଛନ୍ତି, ତାହାର ପରିଚାଳନ ନିମିତ୍ତ ତାହାଙ୍କୁ ପ୍ରେଟୋରିଆ ଯିବାକୁ ପଡ଼ିଲା । ପ୍ରଥମ ଶ୍ରେଣୀର ଟିକଟ କିଣି ଗାନ୍ଧୀ ରେଲ ଗାଡ଼ିରେ ବସିଲେ । ପିଟରମାରିଟସବର୍ଗରେ ଗାଡ଼ି ଉପସ୍ଥିତ ହେଲା । ଏହିଠାରେ ଜନୈକ ଶ୍ୱେତକାୟ ବ୍ୟକ୍ତି ଅତି କର୍କଶଭାବରେ ଗାଡ଼ିରୁ ଓହ୍ଲାଇ ଯିବା ପାଇଁ ଗାନ୍ଧୀଙ୍କୁ ଆଦେଶ କଲେ । ଏହିପରି ବ୍ୟବହାରରେ ବିସ୍ମିତ ହୋଇ ସେ ଗାର୍ଡ଼କୁ ବୁଝାଇ ଥିଲେ ଯେ, ସେ ଜଣେ ପ୍ରଥମ ଶ୍ରେଣୀର ଯାତ୍ରୀ; ସୁତରାଂ ଗାଡ଼ିରୁ ଓହ୍ଲାଇବେ ନାହିଁ । ଗାର୍ଡ଼ ତାହାଙ୍କ କଥା ପ୍ରତି କର୍ଣ୍ଣପାତ କଲା ନାହିଁ । ବଳପୂର୍ବକ ଟାଣି ତାହାଙ୍କୁ ଗାଡ଼ିରୁ ବାହାର କରିଦେଲା ଏବଂ ସମସ୍ତ ଜିନିସପତ୍ର ପ୍ଲାଟଫର୍ମଉପରକୁ ଫିଙ୍ଗିଦେଲା । ଏଥିମଧ୍ୟରେ ଗାଡ଼ି ହଠାତ୍ ଷ୍ଟେସନ ଛାଡ଼ି ଚାଲିଗଲା । ଗାନ୍ଧୀ କଣ କରିବେ, ମନଃକଷ୍ଟରେ କୌଣସିପ୍ରକାରେ ସେଠାରେ ରାତ୍ରି କଟାଇଲେ ।

ଟ୍ରାନ୍ସଭାଲକୁ ଆସିବା ଦିନଠାରୁ ଗାନ୍ଧୀ ଏହିପରି ପଦେ ପଦେ ଲାଞ୍ଛିତ ହେଉଅଛନ୍ତି । ଇଂରେଜ-ଅଶ୍ରିତ ରାଜ୍ୟରେ ସେ ଏପରି ବ୍ୟବହାର ପାଇବେ ବୋଲି କଦାପି ଆଶା କରି ନ ଥିଲେ । ସେ ଯାହାହେଉ ପରଦିନ ପ୍ରାତଃକାଳରେ ଖଣ୍ଡିଏ ଘୋଡ଼ା ଗାଡ଼ି କରି ସେଠାରୁ ପ୍ରେଟୋରିଯ୍ଯା ଯିବାକୁ ବାହାରିଲେ ଏହି ଗାଡ଼ିରେ ଗୋଟିଏ ଓଲନ୍ଦାଜ ଗାର୍ଡ଼ ବସିଥିଲା । ବାଟରେ ଯାଉଁ ଯାଉଁ ଧୂମ୍ରପାନ କରିବ ବୋଲି ଗାନ୍ଧୀଙ୍କୁ ତାହାର ଗୋଡତଳେ ଯାଇ ବସିବାକୁ ଆଦେଶ କଲା । ଗାନ୍ଧୀ ତହିଁରେ ନାସ୍ତି କରିବାରୁ ଏକ ଜବର ମୁଥ ମାଇଲା । ତଥାପି ଗାନ୍ଧୀ ନିଜ ଆସନ ନ ଛାଡିବାରୁ ଆହୁରି ଗୋଟିଏ ମୁଥ ମାଇଲା । ଏହି ଘଟନାରେ ତୁମୁଳ ଗୋଳମାଳ ଉପସ୍ଥିତ ହେଲା । ଅନ୍ୟାନ୍ୟ ଲୋକସବୁ ଏହି ଗୋଳମାଳ ଶୁଣି ସେଠାରେ ଉପସ୍ଥିତ ହୋଇଯିବାରୁ ଉକ୍ତ ଓଲନ୍ଦାଜ ଗାର୍ଡ଼ଟି ପ୍ରହାରରୁ ବିରତ ହୋଇଥିଲା । କେବଳ ଏତିକି ନୁହେ, ଆଉ ଦିନେ ମଧ୍ଯ ଜୋହାନ୍ସବର୍ଗର ହୋଟେଲରେ ରହିବାକୁ ଯାଇ ମଧ୍ଯ ସେ ବଡ଼ ଲାଞ୍ଛିତ ହୋଇଥିଲେ, କାରଣ କଳା ଲୋକର ସେଠାରେ ସ୍ଥାନ ନାହିଁ । ଏହି ସବୁ ବ୍ୟବହାରରେ ଗାନ୍ଧୀ ନିତାନ୍ତ ବ୍ୟତିବ୍ୟସ୍ତ ହୋଇ ମନେ କଲେ ଯେ, ଦକ୍ଷିଣ ଆଫ୍ରିକା ଛାଡ଼ି ଭାରତକୁ ଫେରି ଆସିବେ; କିନ୍ତୁ ସେ ଏହି ଦୁର୍ବଳତାକୁ ମନରେ ବେଶି କ୍ଷଣ ପର୍ଯ୍ୟନ୍ତ ସ୍ଥାନ ଦେଲେ ନାହିଁ । ସେ କ୍ରମଶଃ ଆତ୍ମସଂଯମ ଅଭ୍ୟାସ କରିବାକୁ ଲାଗିଲେ । ଏପରି ଲାଞ୍ଛନା ଓ ଅପମାନ ଅମ୍ଳାନବଦନରେ ସହ୍ୟ କରୁଥିଲେ । ପରେ ଦକ୍ଷିଣ ଆଫ୍ରିକାର ପ୍ରେସିଡେଣ୍ଟ କ୍ରୁଗର୍ ସାହେବଙ୍କ ଘରର ସମ୍ମୁଖସ୍ଥ ରାସ୍ତା ଉପରେ ଯାଉଥିଲାବେଳେ ଜଣେକ ପ୍ରହରୀ ତାହାଙ୍କୁ ପଦାଘାତ କରିଥିଲା । ସଂଯମୀ ମହାତ୍ମା ଗାନ୍ଧୀ ଏଥିରେ ମଧ୍ଯ ବିଚଳିତ ହୋଇ ନ ଥିଲେ । ନିଜର ଅପମାନ ପ୍ରତି ତାହାଙ୍କର ଆଉ ଭ୍ରୂକ୍ଷେପ ନ ଥିଲା । ନିଜ ଦେଶର ଭ୍ରାତୃଗଣ ଏହିପରି ପ୍ରତ୍ୟହ ଲାଞ୍ଛିତ ଓ ଅପମାନିତ ହେବାର ଦେଖି ଗାନ୍ଧୀ ବଡ଼ ଚିନ୍ତିତ । ଏହି ସମୟରେ ଖ୍ରୀଷ୍ଟିୟାନ-ମାନଙ୍କର ଚରିତ୍ର, ବ୍ୟବହାର ଉତ୍ତମରୂପେ ଜାଣିବା ସଙ୍କାଶେ ଗାନ୍ଧୀ ପୁନର୍ବାର

ବାଇବେଲ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ଏହି ଖ୍ରୀଷ୍ଟୀୟ ଧର୍ମଗ୍ରନ୍ଥର ଅଧ୍ୟୟନ ମହାତ୍ମା ଗାନ୍ଧୀଙ୍କ ଜୀବନବିକାଶରେ ବଡ଼ ସାହାଯ୍ୟ କରିଅଛି । ବାଇବେଲରେ ସରମନ୍ ଅନ୍ ମାଉଣ୍ଟ (Sermon on the Mount) ପାଠ କରି ସେ ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ଏହା ଛଡ଼ା ପ୍ଲେଟୋ, ରସ୍କିନ ପ୍ରଭୃତି ପାଶ୍ଚାତ୍ୟ ମନୀଷିଗଣଙ୍କ ଗ୍ରନ୍ଥମାନ ମଧ୍ୟ ଅଧ୍ୟୟନ କରିଥିଲେ । ଏହି ସବୁ ଅଧ୍ୟୟନ ତାହାଙ୍କର ଭାବୀ ଜୀବନରେ ବିଶେଷ ଫଳପ୍ରଦ ହୋଇଅଛି ।



# ଚତୁର୍ଥ ଅଧ୍ୟାୟ ।

( କାରେଣ )

୧୮୯୩ ଖ୍ରୀଷ୍ଟାବ୍ଦ ଶେଷ ହେବାକୁ ବସିଲା । ଗାନ୍ଧୀ ଯେଉଁ ମକଦ୍ଦମାରେ ଯାଇଥିଲେ, ସେହି ମକଦ୍ଦମାଟି ସମାପ୍ତ କରି ଭାରତପ୍ରତ୍ୟାବର୍ତ୍ତନର ଆୟୋଜନ କଲେ । ଡରବାନଠାରେ ଦକ୍ଷିଣଆଫ୍ରିକାସ୍ଥିତ ଭାରତବାସୀମାନେ ଗୋଟିଏ ସଭା କରି ଗାନ୍ଧୀଙ୍କୁ ବିଦାୟ ଦେବାକୁ ଆୟୋଜନ କଲେ । ଯେଉଁ ଦିନ ସଭା ବସିବ, ସେହି ଦିନ ଅପରାହ୍ନ ସମୟରେ ଗାନ୍ଧୀ "ନେଟାଲ-ମାର୍କରି" ନାମକ ଗୋଟିଏ ସମ୍ବାଦପତ୍ର ପାଠ କରି ବୁଝିଲେ ଯେ, ଦକ୍ଷିଣ ଆଫ୍ରିକାର ଗଭର୍ଣ୍ଣମେଣ୍ଟ ଗୋଟିଏ ନୂତନ ଆଇନ ଜାରି କରିବେ ବୋଲି ସ୍ଥିର କରିଅଛନ୍ତି । ଏହି ଆଇନଟି ଜାରି ହୋଇଗଲେ ଭାରତବାସୀମାନଙ୍କୁ ଯେ କି ଅପମାନ ଓ ଦୁଃଖ-କଷ୍ଟ ଭୋଗ କରିବାକୁ ହେବ, ତାହାର ସୀମା ନାହିଁ । ବିଚକ୍ଷଣ ଗାନ୍ଧୀ ଏହି ଆଇନର ସମସ୍ତ ମର୍ମ ଭଲରୂପେ ବୁଝି ପାରିଥିଲେ । ସେହି ଦିନ ସଭାରେ ଏହି କଥାଟି ସମସ୍ତଙ୍କୁ ସେ ଅବଗତ କରାଇଲେ । ଭାରତବାସୀମାନେ ସେଠାରେ ଯେ ନିର୍ଯ୍ୟାତନ ସହ୍ୟ କରି କାଳ ଯାପନ କରନ୍ତି, ତାହା ଭାବିଲେ ହୃଦୟ

ଶତଧା ହୋଇଯାଏ । ଏହା ଉପରେ ପୁଣି ଏପରି ବଜ୍ରପାତ । ଏହି ସମ୍ବାଦ ଶୁଣିବାମାତ୍ରକେ ଭାରତବାସିମାନେ ଅତ୍ୟନ୍ତ ବିସ୍ମିତ ଓ ଅଧୀର ହୋଇ ପଡ଼ିଲେ । କିଂକର୍ତ୍ତବ୍ୟବିମୂଢ଼ ହୋଇ ସେମାନେ ଗାନ୍ଧୀଙ୍କର ପରାମର୍ଶ ଭିକ୍ଷା କଲେ । ଏହି ଆଇନର ପ୍ରତିବାଦ କରିବା ସକାଶେ ଗାନ୍ଧୀ ସମସ୍ତଙ୍କୁ ମନ୍ତ୍ରଣା ଦେଇଥିଲେ । କିନ୍ତୁ ସେମାନଙ୍କୁ ଏପରି ରାଜନୈତିକ ଆନ୍ଦୋଳନରେ ପରିଚାଳନା କରିବାକୁ ସମସ୍ତ ଦକ୍ଷିଣ ଆଫ୍ରିକାରେ କେହି ନାହିଁ । ସେଠାର ଭାରତବାସିମାନେ ଦେଖିଲେ ଯେ, ଏହି ସମୟରେ ଯଦି ସେମାନେ ନିଜର ସତ୍ୱ ରକ୍ଷା କରିବା ସକାଶେ ବଦ୍ଧପରିକର ନ ହୁଅନ୍ତି, ତାହାହେଲେ ମୁକ୍ତିର ଉପାୟ ନାହିଁ । କିନ୍ତୁ ଗାନ୍ଧୀ ସେଠାରେ ନ ରହିଲେ ସେମାନଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ ଦେବ କିଏ ? ଏହିପରି ଅସହାୟ ଅବସ୍ଥା ଦେଖି ସମସ୍ତ ଭାରତବାସୀ ଗାନ୍ଧୀଙ୍କର ସାହାଯ୍ୟ ଭିକ୍ଷା କଲେ । ଗାନ୍ଧୀ ମଧ୍ୟ ସେମାନଙ୍କର ଏହିପରି ଅସହାୟ ଅବସ୍ଥା ଦେଖି ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହେଲେ । ଗୋଟିଏ ଆବେଦନପତ୍ର ଲେଖା ହେଲା । ସଭାରେ ସମବେତ ଭାରତବାସି-ମାନଙ୍କର ସ୍ୱାକ୍ଷର ନେଇ କର୍ମବୀର ଓ ସ୍ୱଦେଶପ୍ରେମିକ ଗାନ୍ଧୀ ଏହି କାର୍ଯ୍ୟରେ ସମସ୍ତ ମନ ପ୍ରାଣ ଢାଳି ଦେଲେ ।

ଦକ୍ଷିଣଆଫ୍ରିକାକୁ ପଦାର୍ପଣରୁ ଗାନ୍ଧୀ ଯେପରି ସମୟେ ସମୟେ ଅପମାନିତ ହୋଇଅଛନ୍ତି, ତାହା ଭାବିଲେ ସେ ସ୍ଥାନରେ ଦଣ୍ଡେ ମାତ୍ର ରହିବାକୁ କାହାର ଇଚ୍ଛା ହେବ ନାହିଁ । କିନ୍ତୁ ଗାନ୍ଧୀ ସେ ସବୁ ପ୍ରତି ତିଳେ ମାତ୍ର ଭ୍ରୂକ୍ଷେପ ନ କରି ଏବଂ ଜୀବନର ସମସ୍ତ ଭବିଷ୍ୟ ଆଶାରେ ଜଳାଞ୍ଜଳି ଦେଇ ସେଠାରେ ରହିବା ସକାଶେ ସ୍ୱୀକୃତ ହେଲେ । ସେଠାର ଦେଶଭାଇମାନଙ୍କ ଦୁର୍ଗତିରେ ତାହାଙ୍କର ମନ ପ୍ରାଣ ସର୍ବଦା ବ୍ୟସ୍ତ । ସୁତରାଂ ବର୍ତ୍ତମାନ ଅବସ୍ଥାରେ ଭାରତବାସିର ମୁକ୍ତିପଥ ପରିଷ୍କାର କରିବା ନିମିତ୍ତ ସମସ୍ତପ୍ରକାର ଅପମାନକୁ ବରଣ କରିନେଲେ । ଭାରତବର୍ଷକୁ ପ୍ରତ୍ୟାବର୍ତ୍ତନ ଆଶା ପରିତ୍ୟାଗ କରି ଦକ୍ଷିଣଆଫ୍ରିକାସ୍ଥ ଭାରତ-ବାସିମାନଙ୍କର ଅଦୃଷ୍ଟ ସହିତ ନିଜକୁ ଏକସୂତ୍ରରେ ଆବଦ୍ଧ କଲେ । ଯେଉଁ

ଗାନ୍ଧୀ ଆଜ ଭାରତବର୍ଷର ଘରେ ଘରେ ମହାତ୍ମାରୂପେ ପରିଚିତ, ତାହାର ନିଦର୍ଶନ ଏହିଠାରୁ ଦେଖା ପଡ଼େ । ଗାନ୍ଧୀଙ୍କ ନିଦର୍ଶନରେ ସମସ୍ତ ଭାରତ-ବାସିଙ୍କ ହୃଦୟରେ ଏକ ନୂତନ ଜାଗରଣ ଜାଗି ଉଠିଲା । ସମସ୍ତ ଦକ୍ଷିଣ ଆଫ୍ରିକାରେ ଏକ ତୁମୁଳ ଆନ୍ଦୋଳନର ସୂତ୍ରପାତ ହେଲା । ଭାରତବାସି-ମାନଙ୍କର ଏହିରୂପ ଆକସ୍ମିକ ଜାଗରଣରେ ଦକ୍ଷିଣଆଫ୍ରିକାର ଗଭର୍ଣ୍ଣମେଣ୍ଟ ବିଚଳିତ ହେଲେ । ଯଥାସମୟରେ ଉକ୍ତ ଆଇନଟିର ପ୍ରତିବାଦର ଆବେଦନ-ପତ୍ର ସରକାରଙ୍କ ନିକଟକୁ ପ୍ରେରିତ ହେଲା । କିନ୍ତୁ ଏହି ଆବେଦନର କୌଣସି ଫଳ ହେଲା ନାହିଁ । ସରକାର ଆଇନଟି ଜାରି କରିଦେଲେ । ଫଳରେ ଅବଶ୍ୟ ଦେଖାଗଲା ଯେ, ଭାରତବାସିମାନେ ନିଜର ଅବସ୍ଥା ପ୍ରତି ଦୃଷ୍ଟି ଫେରାଇଅଛନ୍ତି । ଗଭର୍ଣ୍ଣମେଣ୍ଟ ମଧ୍ୟ ବୁଝିଲେ ଯେ, ଏଣିକି ଭାରତବାସି-ମାନଙ୍କ ସହିତ ବଡ଼ ସାବଧାନରେ ଚଳିବାକୁ ହେବ । ସେମାନେ ଗୋରା ଲୋକଙ୍କର ଖେଳର କଣ୍ଢେଇ ନୁହନ୍ତି । ତାଙ୍କର ଜୀବନ ଅଛି; ଇଚ୍ଛା କଲେ ନିଜର ସ୍ୱତ୍ୱ ଅକ୍ଳେଶରେ ରକ୍ଷା କରି ପାରିବେ ।

ଏହି ପ୍ରଥମ ଚେଷ୍ଟାରେ ଗାନ୍ଧୀ ସଫଳକାମ ହେଲେ ନାହିଁ ସତ୍ୟ, କିନ୍ତୁ ଏଥିପାଇଁ ସେ ନିରୁତ୍ସାହ ହୋଇ ନ ଥିଲେ । ଏତେ ଦିନ ପର୍ଯ୍ୟନ୍ତ ଭାରତବାସୀମାନେ ଦକ୍ଷିଣ ଆଫ୍ରିକାରେ ନିତାନ୍ତ ଦୀନହୀନ ଓ କ୍ରୀତଦାସ ପରି ଜୀବନ ଅତିବାହିତ କରୁଥିଲେ । ସେମାନେ ମନୁଷ୍ୟ, ସେମାନଙ୍କର ସ୍ୱାଧୀନ ମତାମତ ଅଛି, ଉଚ୍ଚ ଆଦର୍ଶ ଓ ଆକାଂକ୍ଷା ଅଛି, ଏହି ଭାବ ପ୍ରଥମେ ଗାନ୍ଧୀ ସେମାନଙ୍କ ଭିତରେ ଜାଗ୍ରତ କରାଇ ଦେଲେ । ଗାନ୍ଧୀ ବୁଝିପାରିଥିଲେ, ଏହି ଭାରତବାସିମାନଙ୍କ ମଧ୍ୟରେ ଯେଉଁ ମହାଶକ୍ତି ନିଦ୍ରିତ ଅବସ୍ଥାରେ ଅଛି, ତାହାକୁ ଥରେ ଜାଗ୍ରତ କରି ପାରିଲେ କିଛି ଅସାଧ୍ୟ ରହିବ ନାହିଁ । ତାହାଙ୍କର ଏହି ଯେ ପ୍ରଥମ ଆନ୍ଦୋଳନ, ତହିଁରେ ଭାରତବାସିଙ୍କର ଆତ୍ମଶକ୍ତି ଫୁଟି ଉଠିବାକୁ ଆରମ୍ଭ କଲା । ସେ ପ୍ରତିଜ୍ଞାବଦ୍ଧ ହେଲେ ଯେ, ଭାରତବାସୀମାନଙ୍କୁ ଦାସତ୍ୱ ବନ୍ଧନରୁ ମୁକ୍ତ କରିବେ । ଜଗତ ସମକ୍ଷରେ ସେମାନେ ଯେପରି

ମନୁଷ୍ୟରୂପରେ ପରିଚିତ ହୁଅନ୍ତୁ, ସେହି ଚେଷ୍ଟାରେ ଗାନ୍ଧୀ ସମସ୍ତ ମନ ପ୍ରାଣ ନିୟୋଜିତ କଲେ । ଦକ୍ଷିଣ ଅଫ୍ରିକାରେ ଭାରତବାସୀମାନଙ୍କର ନିଜର ସ୍ୱାର୍ଥରକ୍ଷା ନିମିତ୍ତ ଗୋଟିଏ ସଭା ପ୍ରତିଷ୍ଠା କରିବାର ଆବଶ୍ୟକତା ହେଲା । କାରଣ ଏହା ହେଲେ ସରକାର ହଠାତ୍ ଯେ କୌଣସି ପ୍ରକାର ଆଇନ ରଚନା କରି ଭାରତବାସିମାନଙ୍କୁ ବିପନ୍ନ କରି ପାରିବେ ନାହିଁ । ତାହାଙ୍କର ଚେଷ୍ଟାରେ ନେଟାଲ ଭାରତୀୟ କଂଗ୍ରେସ ଓ ନେଟାଲ ଭାରତୀୟ ଶିକ୍ଷାସମିତି ନାମରେ ଦୁଇଟି ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ସେ ନିଜେ ଏହି ଦୁଇଟିର ପରିଚାଳନ ଭାର ଗ୍ରହଣ କଲେ ।

ଗାନ୍ଧୀ ଯେତେବେଳେ ଦକ୍ଷିଣ ଅଫ୍ରିକାରେ ବାସ କରିବାର ସ୍ଥିର କଲେ, ତାହାଙ୍କ ଜୀବିକା ଉପାୟର କିଛି ବ୍ୟବସ୍ଥା ହେବା ତ ଦରକାର ? ସେ ପ୍ରତିଜ୍ଞା କରିଅଛନ୍ତି ଯେ, ସେଠାର ଭାରତବାସିମାନଙ୍କଠାରୁ କିଛି ଅର୍ଥ ନିଜର ବ୍ୟୟ ସକାଶେ ଗ୍ରହଣ କରିବେ ନାହିଁ । ସୁତରାଂ ସେଠାରେ ତାହାଙ୍କୁ ବାରିଷ୍ଟରି କରିବାକୁ ହେବ । ସେଠାରେ ଭାରତବାସିମାନେ ମଧ୍ୟ ସ୍ଥିର କଲେ ଯେ ସେମାନେ ଏଣିକି ଯାହା କିଛି ମାମଲାମକଦମା ସେ ସବୁ ତାହାଙ୍କୁ ଦେବେ । କିନ୍ତୁ ଦକ୍ଷିଣ ଅଫ୍ରିକାରେ ବାରିଷ୍ଟରି କରିବାକୁ ହେଲେ ସେଠାର ପ୍ରଧାନ ବିଚାରାଳୟର ଅନୁମତି ପାଇବା ଦରକାର । କିନ୍ତୁ ନେଟାଲର ଗୋରା ବଣିକଗଣ ଏହି ଅନୁମତିଦାନର ବିରୁଦ୍ଧରେ ତୀବ୍ର ପ୍ରତିବାଦ କଲେ । ସେମାନଙ୍କର ଆପତ୍ତି ଏହି ଯେ, କଳା ଲୋକ ଗୋରା ଲୋକମାନଙ୍କ ସହିତ ସମାନ ଅଧିକାର ଦାବି କରିବା ସକାଶେ ବିଚାରାଳୟକୁ ଆସି ନ ପାରେ । ଯାହା ହେଉ ସେମାନଙ୍କର ଆପତ୍ତି ଶୁଣା ଗଲା ନାହିଁ । ଦକ୍ଷିଣ ଅଫ୍ରିକାର ସୁପ୍ରିମ କୋର୍ଟ ଗାନ୍ଧୀଙ୍କୁ ବାରିଷ୍ଟରି କରିବାକୁ ଅନୁମତି ପ୍ରଦାନ କଲେ । ଏହା ପରେ ଗାନ୍ଧୀଙ୍କୁ ଦୁଇ ବର୍ଷ ପର୍ଯ୍ୟନ୍ତ କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । ସେ ପ୍ରଥମେ କେତେଗୁଡ଼ିଏ ଭାରତୀୟ ଯୁବକଙ୍କୁ ନେଇ ଗୋଟିଏ ସେବାସଂଘ ସଂଗଠନ କଲେ ଏବଂ ସେହିମାନଙ୍କର ଶିକ୍ଷା ଦୀକ୍ଷାରେ ବହୁ ସମୟ ନିୟୋଜିତ

କଲେ । ଏହିପ୍ରକାରେ ପ୍ରଥମେ ଗୋଟିଏ ସ୍ୱାର୍ଥତ୍ୟାଗୀ କର୍ମଠ ଦଳ ଗଠନ କରି ଅସ୍ତ୍ରେ ଅସ୍ତ୍ରେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କଲେ ।

ବର୍ତ୍ତମାନ ଉକ୍ତ ଆଇନର ପୁନଃ ପ୍ରତିବାଦର ଆରମ୍ଭ ହେଲା । ନେଟାଲସ୍ଥ ଭାରତୀୟ କଂଗ୍ରେସ ତରଫରୁ ସମସ୍ତ ଔପନିବେଶିକ ଭାରତବାସୀମାନଙ୍କର ସ୍ୱାକ୍ଷର ନେଇ ଗୋଟିଏ ଆବେଦନପତ୍ର ଔପନିବେଶିକ ପାର୍ଲ୍ୟାମେଣ୍ଟ ନିକଟକୁ ପଠାଗଲା । କିନ୍ତୁ ଏହି ଆବେଦନର ମଧ୍ୟ କିଛି ଫଳ ହେଲା ନାହିଁ । ଆଇନଟିର ମର୍ମ୍ମ ଏହି ଯେ, ଏସିୟାବାସିମାନେ ଦକ୍ଷିଣ ଆଫ୍ରିକାରେ କୌଣସି ବିଷୟରେ କୌଣସି ପ୍ରକାର ଭୋଟ ଦେବାର ଅଧିକାର ପାଇବେ ନାହିଁ । ସେମାନେ କେବଳ କ୍ରୀତଦାସ ପରି ମୂଲିଆଗିରି କରି ଗୋରା ଲୋକଙ୍କ ଅଧୀନତ୍ୱ ସ୍ୱୀକାର କରିବେ । ଦକ୍ଷିଣ ଆଫ୍ରିକାର ଶ୍ୱେତାଙ୍ଗ ସମ୍ପ୍ରଦାୟ ଏହି ମର୍ମ୍ମରେ ଆଇନଟିକୁ ପାସ କରାଇ ନେଲେ । କିନ୍ତୁ ନିୟମ ଏହି ଯେ, କୌଣସି ଗୋଟିଏ ନୂତନ ଆଇନ ଜାରି ହେଲେ ତାହା ଜାରି କରିବା ଆଗରୁ ଇଂଲଣ୍ଡର କର୍ତ୍ତୃପକ୍ଷମାନଙ୍କଦ୍ୱାରା ଅନୁମୋଦିତ ହେବା ନିତାନ୍ତ ଆବଶ୍ୟକ । ମହାତ୍ମା ଗାନ୍ଧୀ ଏହି ସୂତ୍ରଧାରେ ତଦାନୀନ୍ତନ ଉପନିବେଶ-ସଚିବ ମିଷ୍ଟର ଜୋସେଫ୍ ଚେମ୍ବରଲେନ୍‌ଙ୍କ ନିକଟକୁ ଗୋଟିଏ ଆବେଦନ ପତ୍ର ପଠାଇଲେ । ସେହି ଆବେଦନପତ୍ରରେ ମହାତ୍ମା ଗାନ୍ଧୀ ଯେଉଁ ସବୁ ଯୁକ୍ତି ପ୍ରଦର୍ଶାଇ ଥିଲେ, ତାହାକୁ ଖଣ୍ଡନ କରିବା ଅସମ୍ଭବ । ସେହି ଆବେଦନ ପତ୍ରଟି ପାଠ କରି ଚେମ୍ବରଲେନ୍ ବଡ଼ ବିଚଳିତ ହୋଇଥିଲେ । ତାହାଙ୍କର ଚେଷ୍ଟାରେ ଇଂଲଣ୍ଡର ଅଧୀଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କର ସ୍ୱାକ୍ଷର ମିଳିଲା ନାହିଁ । ଶେଷରେ ଆଇନଟି ରଦ ହେଲା ।

ଏହିପ୍ରକାରେ ଉକ୍ତ ଆଇନଟି ରଦ ହୋଇଗଲା ପରେ ଦକ୍ଷିଣ ଆଫ୍ରିକାର ଔପନିବେଶିକ ଗଭର୍ଣ୍ଣମେଣ୍ଟଙ୍କ ଉକ୍ତ ଆଇନଟି ଉଠାଇ ନେଲେ ସତ୍ୟ, କିନ୍ତୁ ତାହା ସଙ୍ଗେ ସଙ୍ଗେ ଆଉ ଗୋଟିଏ ଆଇନ ଟିକିଏ ଫେରଫାର

କରି ପାସ କରି ଦେଲେ । ତହିଁରେ ମଧ ଭାରତବାସିମାନଙ୍କ ପକ୍ଷରୁ ତୁମୁଳ ପ୍ରତିବାଦ ଚାଲିଲା, କିନ୍ତୁ କିଛି ମାତ୍ର ଫଳ ହେଲା ନାହିଁ । ଏହି ଅଇନଟି ପାସ କରିବା ପୂର୍ବରୁ କର୍ତ୍ତାମାନେ ଚାଲାକି କରି ଔପନିବେଶିକ ସଚିବ ମିଷ୍ଟର ଜୋସେଫ୍ ଚେମ୍ବରଲେନ୍‌ଙ୍କୁ ଦେଖାଇ ଦେଇଥିଲେ । ସୁତରାଂ ଅନାୟାସରେ ଚଳିତି ଅଇନରେ ପାସ ହୋଇଗଲା । ଏହି ନୂତନ ଅଇନର ମର୍ମ ଏହି ଯେ, ଯେଉଁ ଦେଶରେ ସଂସ୍କାରଶାସନପ୍ରଣାଳୀରେ ପ୍ରଜାଙ୍କର ବିଶେଷ କିଛି କ୍ଷମତା ନାହିଁ, ସେମାନେ ଯଦି ଜାତିରେ ବର୍ଣ୍ଣରେ କଳା ହୋଇଥାନ୍ତି, ତାହାହେଲେ ସେହିଠାର ସରକାରଙ୍କର କୌଣସି କାର୍ଯ୍ୟରେ ସେମାନଙ୍କର ଭୋଟ ଦେବାର କ୍ଷମତା ରହିବ ନାହିଁ । ଶ୍ୱେତାଙ୍ଗମାନଙ୍କର ଏହିପରି ଗୋଟିଏ ଅଇନ ପାସ କରିବାର ଉଦ୍ଦେଶ୍ୟ ଏହି ଯେ, ଏପର୍ଯ୍ୟନ୍ତ କଳା ଲୋକଙ୍କର ଭୋଟ ଦେବାର ଅଧିକାର ଥିବା ହେତୁରୁ ସେମାନଙ୍କୁ ଅନେକ ସମୟରେ କଳା ଲୋକଙ୍କର ଦ୍ୱାରସ୍ଥ ହେବାକୁ ପଡ଼ୁଥିଲା, କିନ୍ତୁ ଏହି ଅଇନଟି ପାସ ହୋଇଗଲେ ସେମାନଙ୍କୁ ଆଉ କଳା ଲୋକଙ୍କର ଦ୍ୱାରସ୍ଥ ହେବାକୁ ପଡ଼ିବ ନାହିଁ । ଆଂଶିକ ଭାବରେ ତାଙ୍କର ମନସ୍କାମନା ପୂର୍ଣ୍ଣ ହେଲା । କାରଣ ଯେଉଁ ନୂତନ ଅଇନଟି ପାସ ହେଲା, ତହିଁରେ ଏପରି ଗୋଟିଏ ସର୍ତ୍ତ ଥିଲା ଯେ, ଯେଉଁମାନଙ୍କର ଭୋଟ ଦେବାର କ୍ଷମତା ପୂର୍ବରୁ ଅଛି, ସେହିମାନଙ୍କର ରହିଲା । ନୂତନ ବ୍ୟକ୍ତି କେହି ଭୋଟ ଦେବାର ଅଧିକାର ପାଇଲେ ନାହିଁ ।

ଏହିପ୍ରକାରେ ଭାରତବାସିମାନଙ୍କୁ ଭୋଟ ଦାନର ଅଧିକାରରୁ ବଞ୍ଚିତ କରି ମଧ ଶ୍ୱେତାଙ୍ଗସମ୍ପ୍ରଦାୟ ନିଶ୍ଚିନ୍ତ ରହି ପାରିଲେ ନାହିଁ । ପୁନର୍ବାର ନାନାପ୍ରକାର ଷଡ଼ଯନ୍ତ୍ର କରିବାକୁ ଆରମ୍ଭ କଲେ । ଦକ୍ଷିଣ ଅଫ୍ରିକାରେ ଯେଉଁ ଭାରତବାସିମାନେ ବାଣିଜ୍ୟ ବ୍ୟବସାୟ କରି ପ୍ରତିଷ୍ଠା ଲାଭ କରି-ଅଛନ୍ତି, ସେମାନେ ସର୍ବଦା ଶ୍ୱେତାଙ୍ଗମାନଙ୍କର ଚକ୍ଷୁ-ଶୂଳ । କାରଣ ବାଣିଜ୍ୟ ବ୍ୟବସାୟକ୍ଷେତ୍ରରେ ଶ୍ୱେତାଙ୍ଗମାନେ ଭାରତବାସିର ସମକକ୍ଷ ହୋଇ ପାରନ୍ତି ନାହିଁ । ଏହି ହେତୁରୁ କପରି ଭାରତବାସିମାନେ ଦକ୍ଷିଣ-

ଆଫ୍ରିକା ଛାଡ଼ି ପଳାଇବେ, ତାହାର ଯୋଗାଡ଼ ଚାଲିଥାଏ । ଦକ୍ଷିଣ ଆଫ୍ରିକାକୁ ଯେଉଁ ସବୁ ଶ୍ରମଜୀବୀ ଦେଶେ ଯାଇଅଛନ୍ତି, ସେମାନେ ଏହି ସର୍ତ୍ତରେ ଯାଇଅଛନ୍ତି ଯେ—(୧) କେହି ୫ବର୍ଷ ମଧ୍ୟରେ କାର୍ଯ୍ୟ ତ୍ୟାଗ କରି ପାରିବେ ନାହିଁ । (୨) ପ୍ରତ୍ୟେକେ ନିଜ ନିଜ ସ୍ତ୍ରୀ ପୁତ୍ର ସହ ବିନା ଭଡ଼ାରେ କର୍ମସ୍ଥଳକୁ ପ୍ରେରିତ ହେବେ । (୩) ପ୍ରତ୍ୟେକେ ନିଜର ସ୍ତ୍ରୀ ଓ ପୁତ୍ର କନ୍ୟାମାନଙ୍କର ଖାଦ୍ୟ ପଦାର୍ଥ ଓ ରହିବାର ଘର ମାଗଣା ପାଇ ପାରିବେ । (୪) ପ୍ରତ୍ୟେକ ଶ୍ରମଜୀବୀ ୧ମ ବର୍ଷ ମାସକୁ ୫ ୬୲ ହିସାବରେ ଦରମା ପାଇବେ, ପରେ ପ୍ରତି ବର୍ଷ ମାସକୁ ୫ ୲ ହିସାବରେ ଦରମା ବଢ଼ି ଯାଉଥିବ । (୫) ଚୁକ୍ତିର ସମୟ ଶେଷ ହେଲା ପରେ କେହି ଯଦି ଆଉ ୫ବର୍ଷ ସେଠାରେ ଶ୍ରମଜୀବୀରୂପେ କାମ କରିବାକୁ ସମର୍ଥ ହୁଏ, ତାହା ହେଲେ ଦେଶକୁ ଫେରିବା ବେଳେ ବିନା ଜାହାଜ ଭଡ଼ାରେ ଫେରି ଆସି ପାରିବ ।

ପ୍ରଥମେ ସର୍ତ୍ତବନ୍ଦୀ କୁଲିମାନଙ୍କପାଇଁ ଏହି ନିୟମ ଥିଲା । କିନ୍ତୁ ଏହା ପରେ ନେଟାଲର ସରକାର ଯେ ଅଇନର ବ୍ୟବସ୍ଥା କଲେ, ତହିଁରେ ସର୍ତ୍ତ ରହିଲା ଯେ, ପ୍ରଥମ ଚୁକ୍ତି ଅନୁସାରେ ୫ ବର୍ଷ ଶେଷ ହେଲା ପରେ ଭାରତର ଶ୍ରମଜୀବୀ ଭାରତକୁ ଫେରି ଯିବ, ସେ ଯଦି ଦକ୍ଷିଣ ଅଫ୍ରିକାରେ ରହିବାକୁ ଚାହେଁ, ତାହାହେଲେ ତାହାକୁ ଚିରଦିନ ସର୍ତ୍ତବନ୍ଧ କୁଲିରୂପେ ରହିବାକୁ ପଡ଼ିବ । ଯଦି କେହି ଭାରତୀୟ କୁଲି ପ୍ରଥମ ଚୁକ୍ତି ଶେଷ ହେଲା ପରେ ଭାରତବର୍ଷକୁ ଫେରି ନ ଯାଏ କିମ୍ବା ନୂତନ ସର୍ତ୍ତରେ ଆବଦ୍ଧ ନ ରହେ, ତାହାହେଲେ ସେ ପତ୍ରଜଦାରୀ ସମ୍ପର୍କରେ ବନ୍ଦୀ ହେବ ।

ଏହି ଅଇନଟିର ଟୀକା ଆବଶ୍ୟକ ନାହିଁ । ପାଠକ ଟିକିଏ ବିଚାର କଲେ ବୁଝି ପାରିବେ ଯେ, ସ୍ୱାର୍ଥାନ୍ଧ ବ୍ୟକ୍ତି କଣ କରି ନ ପାରେ । ଦକ୍ଷିଣ ଆଫ୍ରିକାର ଶ୍ୱେତାଙ୍ଗ ସମାଜ ସ୍ୱାର୍ଥାନ୍ଧ ହୋଇ ମନୁଷ୍ୟକୁ ମନୁଷ୍ୟର ଅଧିକାରରୁ ବଞ୍ଚିତ କରିବାକୁ ବଦ୍ଧପରିକର । ସର୍ତ୍ତବନ୍ଧିର ଅର୍ଥ ଏହି ଯେ, ସର୍ତ୍ତବନ୍ଧ

କୁଲିର ନାଗର କୌଣସି ଅଧିକାର ନାହିଁ । ସେ କ୍ରୀତଦାସ ନ ହେଲେ ମଧ୍ୟ କ୍ରୀତଦାସ ପର । ଯାହାହେଉ ଦକ୍ଷିଣ ଆଫ୍ରିକାର ସରକାର ଭାରତୀୟ ସର୍ତ୍ତବଦ୍ଧ ଶ୍ରମଜୀବୀମାନଙ୍କର ଚୁକ୍ତିପତ୍ରରେ ଯେଉଁ ନୂତନ ପରିବର୍ତ୍ତନ କରିଥିଲନ୍ତି, ତାହା ଭାରତର ସରକାରଙ୍କୁ ଜଣାଇବା ନିତାନ୍ତ ଆବଶ୍ୟକ । କାରଣ ଏରୂପ ପରିବର୍ତ୍ତନ ପରେ ଭାରତର ସରକାର ଭାରତରୁ ଶ୍ରମଜୀବୀ ନେଇ ଯିବାକୁ ଯଦି ଅନୁମତି ନ ଦିଅନ୍ତି, ତାହାହେଲେ ଦକ୍ଷିଣ ଅଫ୍ରିକା ମରୁଭୂମିରେ ପରିଣତ ହେବ । ଏତେ ଅଳ୍ପ ବେତନରେ ଭାରତ ଛଡ଼ା ଅନ୍ୟ କେଉଁଠାରେ ଶ୍ରମଜୀବୀ ମିଳିବେ ନାହିଁ । ସୁତରାଂ ନେଟାଲର କର୍ତ୍ତୃପକ୍ଷ ୧୮୯୩ ଖ୍ରୀଷ୍ଟାବ୍ଦରେ ଦୁଇ ଜଣ ବିଶିଷ୍ଟ ଭଦ୍ରବ୍ୟକ୍ତିଙ୍କୁ ଭାରତସରକାରଙ୍କ ନିକଟକୁ ପଠାଇଲେ ସେମାନେ ଭାରତକୁ ଆସି ଭାରତସରକାରଙ୍କୁ ପ୍ରବର୍ତ୍ତାଇବାକୁ ଚେଷ୍ଟା କଲେ । ବହୁ ଚେଷ୍ଟା ପରେ ଭାରତସରକାର ନୂତନ ସର୍ତ୍ତକୁ ଅନୁମୋଦନ କଲେ; କିନ୍ତୁ ପ୍ରଥମ ୫ ବର୍ଷ ସର୍ତ୍ତ ଶେଷ ହେଲା ପରେ ନୂତନ ସର୍ତ୍ତାନୁସାରେ କେହି ପୁନର୍ବାର ସର୍ତ୍ତବଦ୍ଧ ନ ହେଲେ ସେ ଫଉଜଦାରୀ ଅପରାଧରେ ଦଣ୍ଡିତ ହେବ, ଭାରତସରକାର ଏହି ସର୍ତ୍ତଟି ଅନୁମୋଦନ କଲେ ନାହିଁ । ଉଦ୍ଦେଶ୍ୟ ବିଫଳ ହେବାର ଦେଖି ନେଟାଲର ସରକାର ଅନ୍ୟ ଗୋଟିଏ ପନ୍ଥା ଆବିଷ୍କାର କଲେ । ସେମାନେ ସ୍ଥିର କଲେ ଯେ, ସର୍ତ୍ତଭଙ୍ଗ କରି ଯେଉଁମାନେ ନେଟାଲରେ ବାସ କରିବେ, ସେମାନଙ୍କର ପରିବାରର ପ୍ରତ୍ୟେକ ବ୍ୟକ୍ତିକୁ ବାର୍ଷିକ ଟ ୪୫୲ ହିସାବରେ ଗୋଟିଏ କର ଦେବାକୁ ହେବ ।

ମହାତ୍ମା ଗାନ୍ଧୀ ଦେଖିଲେ, ଯଦି ଭାରତୀୟ ଶ୍ରମଜୀବୀଗଣଙ୍କୁ ଏହି କର ଦେଇ ନେଟାଲରେ ରହିବାକୁ ପଡ଼େ, ତାହାହେଲେ ତାଙ୍କ ଉପାର୍ଜିତ ଧନର ଅର୍ଦ୍ଧେକ କର ଦେବାରେ ଚାଲିଯିବ । କାରଣ ପରିବାର ମଧ୍ୟରେ ଛୋଟ ବଡ଼ ସମସ୍ତେ ଏହି କର ଦେବାକୁ ବାଧ୍ୟ । ଗୋଟିଏ ପରିବାରରେ ପୁତ୍ର କନ୍ୟା ସ୍ତ୍ରୀ ହୋଇ ଯଦି ଚାରୋଟି ଥାନ୍ତି, ସେହି ପରିବାରର ଭରଣପୋଷଣ କରିବାପାଇଁ କେବଳ ଜଣେ ବ୍ୟକ୍ତି । ତାହାକୁ ଯଦି ବାର୍ଷିକ ଟ ୪୫୲ ହିସାବରେ

ପ୍ରତ୍ୟେକଙ୍କପାଇଁ କର ଦେବାକୁ ପଡ଼େ, ତେବେ ବାଧ ହୋଇ ତାକୁ ଦକ୍ଷିଣ ଅଫ୍ରିକା ପରିତ୍ୟାଗ କରିବାକୁ ପଡ଼ିବ । ଏହି ଅନ୍ୟାୟ କୁଚକ୍ରାନ୍ତ ବୁଝି ପାରି ମହାତ୍ମା ଗାନ୍ଧୀ ଏହାର ତୁମୁଳ ପ୍ରତିବାଦ ଆରମ୍ଭ କଲେ, କିନ୍ତୁ ସମସ୍ତ ପ୍ରତିବାଦ ବୃଥା ହେଲା । ନେଟାଲସରକାର ଏହି ଆଇନଟିକୁ ପାଶ୍ କରାଇ ନେଲେ ।

# ପଞ୍ଚମ ଅଧ୍ୟାୟ ।

ଏହି ପ୍ରକାରେ ମହାତ୍ମା ଗାନ୍ଧୀ ପୁନଃ ପୁନଃ ବ୍ୟର୍ଥମନୋରଥ ହେଲେ ମଧ୍ୟ କଦାପି ଚେଷ୍ଟାରୁ ରହିତ ହେଲେ ନାହିଁ । ଏଥର ଦୁଇ ଗୁଣ ଉତ୍ସାହ ସହିତ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ବଦ୍ଧପରିକର ହେଲେ । କିପରି ଜୀବନସଂଗ୍ରାମରେ ଜୟୀ ହେବାକୁ ହେବ, ଗାନ୍ଧୀଙ୍କୁ ତାହାର ଉପାୟ ଅବିଦିତ ନ ଥିଲା, କିନ୍ତୁ ସେ ପୁନର୍ବାର କାର୍ଯ୍ୟାରମ୍ଭ ପୂର୍ବରୁ ଭାରତବର୍ଷକୁ ଆସି ନିଜର ସ୍ତ୍ରୀ ପରିବାରଙ୍କୁ ସେଠାକୁ ନେଇ ଯିବାକୁ ନିଶ୍ଚୟ କଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ସେ ଭାରତବର୍ଷକୁ ଫେରି ଆସିଲେ । ଦକ୍ଷିଣ ଅଫ୍ରିକା ତ୍ୟାଗ କରିବା ପୂର୍ବରୁ ସେଠାର ଭାରତବାସିମାନଙ୍କର ଦୁର୍ଦ୍ଦଶା ଉତ୍ତମରୂପେ ବର୍ଣ୍ଣନା କରି ଖଣ୍ଡିଏ ପୁସ୍ତକ ଲେଖିଥିଲେ । ଭାରତବର୍ଷରେ ଉପସ୍ଥିତ ହୋଇ ସ୍ଥାନେ ସ୍ଥାନେ ସେ ଯେଉଁ ବକ୍ତୃତା ଦେଇଥିଲେ, ସେହି ସମସ୍ତ ବକ୍ତୃତାର ସାରାଂଶ ଓ ଉକ୍ତ ପୁସ୍ତକ ଏକତ୍ର ହୋଇ ଖଣ୍ଡିଏ ବୃହତ୍ ପୁସ୍ତକ ଛପା ହେଲା । ସେହି ପୁସ୍ତକ ସର୍ବସାଧାରଣଙ୍କୁ ବିତରିତ ହେଲା ।

ଭାରତବର୍ଷରେ ପହଞ୍ଚିବା ପୂର୍ବରୁ ମହାତ୍ମା ଗାନ୍ଧୀଙ୍କର ଯଶ କୀର୍ତ୍ତି ଦେଶରେ ବ୍ୟାପି ଯାଇଥିଲା । ସେ ଭାରତବର୍ଷରେ ଉପସ୍ଥିତ ହେଲା ମାତ୍ରକେ ସାଦରେ ସର୍ବତ୍ର ଗୃହୀତ ହୋଇଥିଲେ । ସ୍ଥଳେ ସ୍ଥଳେ ସଭା ସମିତି ବସିଲା ।

ମହାତ୍ମା ଗାନ୍ଧୀ ଯେ ସମସ୍ତ ସ୍ଥଳରେ ଉପସ୍ଥିତ ହୋଇ ପ୍ରବାସୀ ଭାରତବାସୀଙ୍କ ହୃଦୟବିଦାରକ ଦୁଃଖ-କାହାଣୀ ବର୍ଣ୍ଣନା କରିବାକୁ ଲାଗିଲେ । ଗାନ୍ଧୀଙ୍କର ବକ୍ତୃତାରେ କୌଣସି ପ୍ରକାରେ ଆଡ଼ମ୍ବର ନାହିଁ । ସେ ଧୀର ସ୍ଥିର ଭାବରେ ଦଣ୍ଡାୟମାନ ହୋଇ ନିଜ ହୃଦୟର କଥାଗୁଡ଼ିକ ଶୁଣାଇ ଦିଅନ୍ତି । ଯେ ଥରେ ତାହାଙ୍କର ବକ୍ତୃତା ଶୁଣିଅଛି, ସେ ସେହି ବକ୍ତୃତାର ମାଧୁର୍ଯ୍ୟ ଓ ମୋହନୀ ଶକ୍ତି ଅନୁଭବ କରି ପାରିଅଛି ।

ଭାରତବାସିଗଣ ମହାତ୍ମା ଗାନ୍ଧୀଙ୍କ ନିକଟରୁ ପ୍ରବାସୀ ଭାରତବାସିମାନଙ୍କର ଦୁଃଖର କାହାଣୀମାନ ଶ୍ରବଣ କରି ଅତ୍ୟନ୍ତ ମର୍ମବେଦନା ଅନୁଭବ କରିବାକୁ ଲାଗିଲେ । ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସହାନୁଭୂତିର ଏକ ପ୍ରବଳ ବନ୍ୟା ପ୍ରବାହିତ ହେବାକୁ ଲାଗିଲା । ଭାରତବର୍ଷରେ ଏହି ଆନ୍ଦୋଳନର ସମ୍ବାଦ ତାରଯୋଗେ ଅତି ବିସ୍ତୃତଭାବରେ ଇଂଲଣ୍ଡକୁ ପ୍ରେରିତ ହେଲା । ସେହି ସମ୍ବାଦ ଯାଇ ଦକ୍ଷିଣ ଅଫ୍ରିକାର ନେଟାଲରେ ପହଞ୍ଚିଲା ସେଠାର ଶ୍ୱେତାଙ୍ଗ ଅଧିବାସିମାନେ ମନେ କଲେ, ଗାନ୍ଧୀ ଭାରତବର୍ଷକୁ ଯାଇ ଆମ୍ଭ ନାମରେ ଅନେକ ମିଥ୍ୟାବାଦ ରଟନା କରିଅଛି । ଏହି ସମ୍ବାଦ ପାଇଲା ମାତ୍ରକେ ଦକ୍ଷିଣ ଅଫ୍ରିକାର ଶ୍ୱେତାଙ୍ଗ-ସମାଜର କ୍ରୋଧର ସୀମା ରହିଲା ନାହିଁ । ସ୍ଥାନେ ସ୍ଥାନେ ସଭା ସମିତି କରି ମହାତ୍ମା ଗାନ୍ଧୀଙ୍କର ନିନ୍ଦା କରିବାକୁ ଲାଗିଲେ । ଦକ୍ଷିଣ ଆଫ୍ରିକାରେ ସେମାନେ ଗାନ୍ଧୀଙ୍କ ପ୍ରତି ଯେପରି ଅଭଦ୍ର ବ୍ୟବହାର କରି-ଅଛନ୍ତି ତାହାର ପୁରସ୍କାର ସ୍ୱରୂପ ଗାନ୍ଧୀ ସେମାନଙ୍କର ନିନ୍ଦା କରୁଅଛନ୍ତି ବୋଲି ତାହାଙ୍କ ଉପରେ ଏପରି ଅଯଥା ଦୋଷାରୋପ କରିବାକୁ ଲାଗିଲେ । ଏହି ଆନ୍ଦୋଳନରେ ସେଠାକାର ଭାରତବାସିମାନେ ଅତ୍ୟନ୍ତ ଶଙ୍କିତ ହୋଇ ପଡ଼ିଲେ ଏବଂ ମହାତ୍ମା ଗାନ୍ଧୀଙ୍କୁ ସେଠାକୁ ଶୀଘ୍ର ଫେରିଯିବା ସକାଶେ ଅନୁରୋଧ କଲେ । ମହାତ୍ମା ଗାନ୍ଧୀ ୧୮୯୬ ଖ୍ରୀଷ୍ଟାବ୍ଦର ନବେମ୍ବର ମାସରେ କଲିକତାରେ ଗୋଟିଏ ବଡ଼ ସଭା କରି ବକ୍ତୃତା ଦେବାକୁ ଆୟୋଜନ କରୁଅଛନ୍ତି, ଏପରି ସମୟରେ ଦକ୍ଷିଣ ଅଫ୍ରିକାରୁ ଗୋଟିଏ ତାର ପାଇଲେ ।

ତାହାର ମର୍ମ ଏହି ଯେ, ନେଟାଲରେ ଶୀଘ୍ର ପାର୍ଲିଅମେଣ୍ଟର ଅଧିବେଶନ ହେବ, ସେ ହଠାତ୍ ସେଠାକୁ ଫେରି ନ ଗଲେ ଭାରତବାସିମାନଙ୍କର କିଛି ବିପଦ ଘଟି ପାରେ । ଏହି ତାର ପାଇଲା ମାତ୍ରକେ ମହାତ୍ମା ଗାନ୍ଧୀ ବୋମ୍ବାଇ ଗ୍ଲଲେ । ବୋମ୍ବାଇଠାରେ ଜାହାଜର ଟିକଟ କିଣି ସ୍ତ୍ରୀ-ପରିବାର ସହିତ ନବେମ୍ବର ୧୮ ତାରିଖ ଦିନ ଦକ୍ଷିଣ ଅଫ୍ରିକା ଯାତ୍ରା କଲେ । ଏହାଙ୍କ ଯିବାର ଦୁଇ ଦିନ ପରେ ଆଉ ଖଣ୍ଡିଏ ଜାହାଜ କେତେଗୁଡ଼ିଏ ଭାରତବାସିଙ୍କୁ ନେଇ ଦକ୍ଷିଣ ଅଫ୍ରିକା ଯାତ୍ରା କଲା ।

ସ୍ୱାସ୍ଥ୍ୟବିଭାଗୀୟ କର୍ମଚାରିଙ୍କର ଆଦେଶ ଅନୁସାରେ ଉକ୍ତ ଦୁଇଖଣ୍ଡି ଜାହାଜ "କୋଆରାଣ୍ଟାଇନ୍" ଆଇନର ବଳରେ ସମୁଦ୍ରତୀରରେ ଲାଗିବାକୁ ଅନୁମତି ପାଇ ନ ଥିଲା । ଯାତ୍ରିମାନେ ଏହି ଜାହାଜରେ ଅଟକ ରହିଲେ । ଜାହାଜର ଅଧ୍ୟକ୍ଷ ଓ କୋମ୍ପାନିର ଏଜେଣ୍ଟ ଏହିପରି ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଜାହାଜକୁ ଅଟକାଇ ରଖିବା ବିରୁଦ୍ଧରେ ଭାରି ଆପତ୍ତି କଲେ । ଏଣେ ମହାତ୍ମା ଗାନ୍ଧୀଙ୍କର ଯାଉଥିବା ସମ୍ବାଦ ପାଇ ଗୋରା ଲୋକମାନେ ଚମକି ଉଠିଲେଣି । ଦକ୍ଷିଣ ଅଫ୍ରିକାରେ ପ୍ରଚାରିତ ହେଲା ଯେ, ଗାନ୍ଧୀ ଭାରତବର୍ଷରୁ ଅନେକ ଦଳ ଦଳ ନେଇ ଆସୁଅଛି । ଅନେକ ଶିଳ୍ପକାରିଗର ମଧ୍ୟ ଆଣିଅଛି । ସେଠାରେ ଉପସ୍ଥିତ ହେଲେ ସମସ୍ତ ଶିଳ୍ପ କାର୍ଯ୍ୟ ନିଜର ହସ୍ତଗତ କରିବ । ଗୋରା ଶିଳ୍ପ କାରିଗରମାନେ ଆଉ କିଛି କାର୍ଯ୍ୟ ପାଇ ପାରିବେ ନାହିଁ । ଏହିପରି ଗାନ୍ଧୀ ଗୋରା ଲୋକମାନଙ୍କୁ ହାତରେ ନ ମାରି ଭାତରେ ମାରିବାର ବ୍ୟବସ୍ଥା କରି ଅଛି । ଏହି ସମ୍ବାଦ ପ୍ରଚାରିତ ହେଲା ମାତ୍ରକେ ଗୋରା ଲୋକମାନେ ଅତ୍ୟନ୍ତ କ୍ଷେପି ଉଠିଲେ । ସେମାନେ ଗୋଟିଏ ବଡ଼ ସଭା କରି ସ୍ଥିର କଲେ ଯେ, ଭାରତବାସିମାନଙ୍କୁ କୂଳରେ ଓହ୍ଲାଇବାକୁ ଦିଆଯିବ ନାହିଁ । ଯଦି ସେମାନେ ସ୍ଥଳପ୍ରଦେଶରେ ପାଦ ପକାନ୍ତି, ଗୋରା ଲୋକମାନେ ବଳ ପ୍ରୟୋଗ କରିବାକୁ କୁଣ୍ଠିତ ହେବେ ନାହିଁ । କେହି କେହି ମଧ୍ୟ ପ୍ରସ୍ତାବ କଲେ ଯେ, ଏହି ଦୁଇ ଖଣ୍ଡି ଜାହାଜକୁ ଜଳମଗ୍ନ କରି ଦିଆଯାଉ । ଶ୍ୱେତାଙ୍ଗମାନଙ୍କର

ଏହି ଆନ୍ଦୋଳନରେ ସେଠାର ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତି ମଧ୍ୟ ଯୋଗ ଦେଇଥିବାର ପ୍ରମାଣ ମିଳେ । ସରକାରଙ୍କର ଏଥି ସଙ୍ଗେ ସହଯୋଗିତା ଥିଲାପରି ଅନେକ ବ୍ୟାପାରରୁ ସନ୍ଦେହ ହୁଏ । ଏହି ପ୍ରକାର ଆନ୍ଦୋଳନ ହେଲା ଭାରତବାସିମାନେ ଅତ୍ୟନ୍ତ ଶଙ୍କିତ ହୋଇ ପଡ଼ିଲେ । ସେମାନଙ୍କ ପ୍ରତି କେତେବେଳେ କଣ ଘଟି ପାରେ, ତାହାର କିଛି ସ୍ଥିରତା ନାହିଁ । ମହାତ୍ମା ଗାନ୍ଧୀଙ୍କୁ ସମ୍ବାଦ ଦିଆଗଲା ଯେ, ସେ ଯଦି ଏଠାରେ ଅବତୀର୍ଣ୍ଣ ହୁଅନ୍ତି, ତେବେ ତାହାଙ୍କର ଜୀବନ ସଙ୍କଟାପନ୍ନ, କିନ୍ତୁ ଗାନ୍ଧୀ ଏରୂପ ଭୟ ପ୍ରଦର୍ଶନରେ ତିଳେ-ମାତ୍ର ବିଚଳିତ ହେଲେ ନାହିଁ । ସେ ଶାନ୍ତଭାବରେ "କୋୟାରାଣ୍ଟାଇନ" ନିୟମର ନିର୍ଦ୍ଦିଷ୍ଟ କାଳ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲେ । କାରଣ ସେ ଜାଣିଥିଲେ, ଏମାନେ ଯେତେ ଭୟ ପ୍ରଦର୍ଶନ କଲେ ମଧ୍ୟ ଆଇନ ଅନୁସାରେ ତାହାଙ୍କର ଅବତରଣ ପଥରେ କେହି ବାଧା ଦେଇ ପାରିବେ ନାହିଁ ।

ଏହିପ୍ରକାରେ ୨୪ ଦିନ ଅତୀତ ହେବାକୁ ବସିଲା, ଜାନୁୟାରୀ ୧୨ ତାରିଖ ଦିନ ଜାହାଜର କର୍ତ୍ତା ନେଟାଲର ସରକାରଙ୍କୁ ଏହି ମର୍ମରେ ଜଣାଇ ଦେଲେ ଯେ, "ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଜାହାଜ ଲଙ୍ଗର କରି ରହିଅଛି । ପ୍ରତ୍ୟହ କମ୍ପାନୀର ୨୨ ଶତ ଟଙ୍କା କ୍ଷତି ହେଉଅଛି, ଆଉ ବିଳମ୍ବ କଲେ ଚଳିବ ନାହିଁ । କାଲି ଦ୍ୱିପ୍ରହର ମଧ୍ୟରେ ଉତ୍ତର ଦିବା ଅତ୍ୟନ୍ତ ଆବଶ୍ୟକ । ଗତ ରବିବାର ଦିନଠାରୁ ସରକାରଙ୍କୁ ସମସ୍ତ କ୍ଷତିପୂରଣ ଦେବାକୁ ପଡ଼ିବ । ଏହା ଛଡ଼ା ତୀରରେ ଜାହାଜ ଲାଗିଲାବେଳେ ଯେପରି କୌଣସିପ୍ରକାର ଅନିଷ୍ଟ ନ ଘଟେ, ସେଥି ପ୍ରତି ସରକାର ଯତ୍ନବାନ୍ ହେବେ ।" ଜାହାଜକର୍ତ୍ତାଙ୍କର ଏହି ପତ୍ରର ଉତ୍ତର ଆସିବାରେ ବିଳମ୍ବ ଘଟିଲା ନାହିଁ । ସରକାର ସମସ୍ତ ବିଷୟର ବନ୍ଦୋବସ୍ତ କରିବେ ବୋଲି ପ୍ରତିଶ୍ରୁତ ହେଲେ । ଏଣେ ଶ୍ୱେତାଙ୍ଗସମାଜ ଜାହାଜର ଅଧିପଙ୍କୁ ଜଣାଇଲେ ଯେ, ଭାରତବାସିମାନେ ଡରବାନରେ ଅବତୀର୍ଣ୍ଣ ହେଲେ ଭୀଷଣ କାଣ୍ଡ ସଂଘଟିତ ହେବ । ଭାରତବାସିମାନେ

ଭାରତବର୍ଷକୁ ଫେରିଗଲେ ବଡ଼ ଭଲ ହୁଅନ୍ତା । ସେମାନଙ୍କର ଯିବା ଆସିବାର ଖରଚ ଆମ୍ଭେମାନେ ଦେବାକୁ ପ୍ରସ୍ତୁତ ଅଛୁଁ । କିନ୍ତୁ ଏହି ପଦର ମର୍ମ ଗାନ୍ଧୀ ଭଲରୂପେ ବୁଝି ପାରିଥିଲେ ଏବଂ ଜାହାଜସ୍ଥ ଭାରତବାସିମାନଙ୍କୁ ମଧ୍ୟ ବୁଝାଇ ଦେଇଥିଲେ । "ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତବାସିମାନେ ଅବତରଣ କରିବେ, ପ୍ରାଣ ଗଲେ ସୁଦ୍ଧା ସେମାନେ ଆଉ ଭାରତବର୍ଷକୁ ଏପରି ଅବସ୍ଥାରେ ଫେରି ଯିବେ ନାହିଁ", ଏହି ଉତ୍ତର ଜାହାଜର ଅଧ୍ୟକ୍ଷ ସେହି ଶ୍ୱେତାଙ୍ଗ-ସମାଜକୁ ଜଣାଇ ଦେଇଥିଲେ ।

ଏଣେ ଜାହାଜ ବନ୍ଦରରେ ଲାଗିବାର ନିର୍ଦ୍ଦିଷ୍ଟ ଦିନ ଓ ନିର୍ଦ୍ଦିଷ୍ଟ ସମୟ ଆସି ଉପସ୍ଥିତ ହେଲା । ଜାହାଜ ଡୁଇଖଣ୍ଡି ବନ୍ଦର ଅଭିମୁଖରେ ଅଗ୍ରସର ହେବାକୁ ଲାଗିଲା । ଏଣେ ଦଳ ଦଳ ଗୋରା ଲୋକ ଆସି ସମୁଦ୍ରକୂଳରେ ଜମା ହେବାକୁ ଲାଗିଲେ । ଏଟର୍ନି ଜେନେରେଲ ଆସି ସମ୍ବାଦ ଦେଲେ ଯେ, ଯାତ୍ରିମାନଙ୍କର ଭୟର କୌଣସି କାରଣ ନାହିଁ ଏବଂ ସଙ୍ଗେ ସଙ୍ଗେ ବନ୍ଦରରେ ସମବେତ ଦଳମାନଙ୍କୁ ବୁଝାଇ ଫେରାଇ ଦେଲେ । ମିଃ ଲଉଟନ ନାମରେ ଜଣେ ଗୋରା ଭଦ୍ରଲୋକ ଗାନ୍ଧୀଙ୍କ ନିକଟରେ ଆସି ପହଞ୍ଚିଲେ । ପ୍ରଥମରୁ ଗାନ୍ଧୀ ନିଜର ସ୍ତ୍ରୀ ପରିବାରଙ୍କୁ ଜଣେ ଭାରତୀୟ ବନ୍ଧୁଙ୍କ ଘରକୁ ପଠାଇ ଦେଇ ନିଜେ ଜାହାଜରୁ ଓହ୍ଲାଇଲେ । ବନ୍ଦରରେ ଓହ୍ଲାଇ ଦେଖନ୍ତି ଯେ, ସ୍ଥାନଟି ଏକାବେଳକେ ଜନଶୂନ୍ୟ ନୁହେ । ଗାନ୍ଧୀଙ୍କ ଦେଖି ଉପସ୍ଥିତ ଲୋକ-ଗୁଡ଼ିକ ଚିତ୍କାର କରିବାକୁ ଆରମ୍ଭ କଲେ । ଦେଖୁ ଦେଖୁ କୁଆଡ଼ୁ ଆସି ଲୋକ ଗଦା ହୋଇଗଲେ, ସେହି ଇଂରାଜ ଭଦ୍ରଲୋକଟି ଖଣ୍ଡିଏ ଗାଡ଼ି କରି ତହିଁରେ ଗାନ୍ଧୀଙ୍କୁ ନେଇ ଯିବାକୁ ବସିଲେ, କିନ୍ତୁ ଲୋକମାନେ ଗାଡ଼ି ପାଖକୁ ଯିବାକୁ ବାଟ ଛାଡ଼ି ଦେଲେ ନାହିଁ । ଏଣୁ ସେମାନେ ବାଧ୍ୟ ହୋଇ ଚାଲିକରି ଯିବାକୁ ଲାଗିଲେ । ଅଳ୍ପ ବାଟ ଯାଇଅଛନ୍ତି, ପୁଣି ବହୁତ ଲୋକ ଆସି ବାଟରେ ଜମା ହୋଇଗଲେ । ଚାରିଆଡ଼ୁ ଲୋକେ ଦୌଡ଼ି ଆସି ଗାନ୍ଧୀଙ୍କୁ ଘେରିଗଲେ । ଏହି ଗୋଲମାଳ ଭିତରେ ପଡ଼ି ବନ୍ଧୁ ଦୁଇଟି ଯାଙ୍ଗଛଡ଼ା ହୋଇ ପଡ଼ିଲେ ।

ସେହି ଗୋଟିଏ ଭଦ୍ରଲୋକଙ୍କଠାରୁ ଲୋକମାନେ ଟାଣି ନେଇ କେଉଁ ଆଡ଼େ ପଳାଇଲେ । ତେଣୁ ମହାତ୍ମା ଗାନ୍ଧୀ ଗୋଳମାଳ ଭିତରେ ଏକା ହୋଇ ରହିଗଲେ । ଚାରିଆଡ଼ୁ ଢେଲା ପଥର ଆସି ତାଙ୍କ ଉପରେ ପଡ଼ିଲା । ଗାନ୍ଧୀ କାହାକୁ କିଛି ପାଟି ନ କରି ଗୋଟିଏ ଗୋଟିଏ ଚାଲୁଥାନ୍ତି । ଢେଲା ପଥର ବାଜି ଦେହ ମୁଣ୍ଡ ଫାଟି ଗଲାଣି; ଲୋକଙ୍କର ଏତେ ଭିଡ଼ ଯେ, ଆଉ ଆଗକୁ ଯିବାକୁ ବାଟ ନାହିଁ । ବିଧା, ଚାପୁଡ଼ା, ଠେଙ୍ଗା ଯେ ଯେପରି ପାରିଲା, ସେ ସେପରି ମାରୁଅଛି । ଗାନ୍ଧୀ ନୀରବ ହୋଇ ଠିଆ ହୋଇଗଲେ । "ଈଶ୍ୱରଙ୍କର ଯାହା ବିଧାନ ଥିବ ତାହା ନିଶ୍ଚୟ ଘଟିବ । ସେଥିରେ ହାତ କାହାର ?" ଗାନ୍ଧୀ ଏହି କଥା ଭାବୁଅଛନ୍ତି, ଏପରି ସମୟରେ ପଛପଟୁ ଗୋଟାଏ ଗୁଣ୍ଡା ଆସି ହଠାତ୍ ତାଙ୍କୁ ଗୋଟାଏ ଗୋଇଠା ମାରିଲା । ଗାନ୍ଧୀ ତଳେ ପଡ଼ିଗଲେ । ହାତ ପାଇବାକୁ ଦଳିଲା ପରି ଲୋକେ ଗୋଡ଼ର ବୁଟ ଯୋତାରେ ତାଙ୍କ ଦେହ ମୁଣ୍ଡ ସବୁ ଦଳି ପକାଇଲେ । ଗାନ୍ଧୀ ବର୍ତ୍ତମାନ ଚେତାହୀନ ହୋଇ ମଲା ପରି ପଡି ରହିଅଛନ୍ତି, ତଥାପି ପ୍ରହାର ବନ୍ଦ ନାହିଁ । ଯେପରି ଲୌହସ୍ତମ୍ଭରୁ କରୁଣାକର ଭଗବାନ୍ ବାହାରି ପ୍ରହ୍ଲାଦଙ୍କୁ ରକ୍ଷା କରିଥିଲେ, ସେହିପରି ଈଶ୍ୱରଙ୍କ ଦୂତସ୍ୱରୂପ ଗୋଟିଏ ଇଂରାଜ ମହିଳା କୁଆଡ଼ୁ ଦୌଡ଼ି ଆସିଲେ । ଇତିମଧ୍ୟରେ ଗୋଟିଏ ଭାରତୀୟ ବାଳକ ପୁଲିଶକୁ ଯାଇ ଖବର ଦେଇଥିଲା ଯେ, ଲୋକେ ଗାନ୍ଧୀଙ୍କୁ ମାରି ପକାଉଅଛନ୍ତି । ପୁଲିଶ ମଧ୍ୟ ହଠାତ୍ ଦଳ ବଳ ନେଇ ସେଠାରେ ଆସି ହାଜର ହେଲେ । ଲୋକେ ଛିଡ଼ ପଳାଇ ଗଲେ । ଗାନ୍ଧୀ ତାଙ୍କ ସ୍ତ୍ରୀ ପରିବାରଙ୍କୁ ଯେଉଁ ବନ୍ଧୁଙ୍କ ଘରକୁ ପଠାଇ ଦେଇଥିଲେ, ତାହାଙ୍କୁ ସେହି ଘରକୁ ପଠାଇ ଦିଆଗଲା । ଗାନ୍ଧୀ ନିରାପଦରେ ସେଠାରେ ପହଞ୍ଚିଲେ । ବାଟରେ ଆଉ କୌଣସି ବିପଦ ହୋଇ ନ ଥିଲା ।

ଗାନ୍ଧୀ ଯେଉଁଠାରେ ରହିଲେ, ଖବରରେ ଲୋକେ ସେଠାରେ ଆସି ଜମା ହେବାକୁ ଲାଗିଲେ । ସେମାନେ ଚିତ୍କାର କରି କହିଲେ ଯେ,

ଗାନ୍ଧୀଙ୍କୁ ଘରୁ ବାହାର କରିଦିଅ, ନଚେତ୍ ଏହି ଘର ପୋଡ଼ି ଭସ୍ମ କରିଦେବୁଁ । ପୁଣି ଆସି ବିପଦ ଉପସ୍ଥିତ । ପୁଲିସ ଆସି ଗାନ୍ଧୀଙ୍କୁ କହିଲା, ଯେ ଯଦି ତାହାଙ୍କର ସ୍ତ୍ରୀ, ପରିବାରଙ୍କର ଆତ୍ମରକ୍ଷା କରିବାକୁ ଚାହାନ୍ତି, ତାହାହେଲେ ସେହି ସ୍ଥାନ ଛାଡି ତାହାଙ୍କୁ ପଳାଇବାକୁ ହେବ । ପୁଲିସର ଉପଦେଶ ଅନୁସାରେ ମହାତ୍ମା ଗାନ୍ଧୀ ଗୋଟିଏ କନେଷ୍ଟବଲର ବେଶ ପିନ୍ଧି ସେହି ସ୍ଥାନରୁ ବାହାରି ଗଲେ । ତାପରେ କିଛି ସମୟ ପୁଲିସର ଆଶ୍ରୟ ଗ୍ରହଣ କଲେ । ଏହା ପରେ ଏହି ଉତ୍ତେଜନା ଧୀରେ ଧୀରେ କମିଗଲା । ସ୍ଥିରଅଡ଼ ଶାନ୍ତଭାବ ଧାରଣ କଲା । ଗାନ୍ଧୀଙ୍କ ଉପରେ ସନ୍ଦେହ କରି ଯେଉଁ ମିଥ୍ୟାକଥା ପ୍ରଚାର ହୋଇଥିଲା, ତାହା ସମସ୍ତେ ବୁଝି ପାରିଲେ । ଗାନ୍ଧୀଙ୍କ ପ୍ରତି ଏପରି ଅନ୍ୟାୟ ବ୍ୟବହାର ହେବାର ଦେଖି ଦକ୍ଷିଣ ଆଫ୍ରିକାର ପ୍ରଧାନ ପ୍ରଧାନ ଲୋକମାନେ ଅତ୍ୟନ୍ତ ଦୁଃଖ ପ୍ରକାଶ କରିଥିଲେ ।

## ସପ୍ତ ଅଧ୍ୟାୟ ।

### (ରଣକ୍ଷେତ୍ର)

୧୮୯୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ବୁଅର ଯୁଦ୍ଧ ଆରମ୍ଭ ହେଲା । ଦକ୍ଷିଣ ଆଫ୍ରିକାରେ ବୁଅର ଜାତି ଇଂରେଜମାନଙ୍କ ଉପରେ ବଡ଼ ଅସନ୍ତୁଷ୍ଟ ଥିଲେ । ଇଂରେଜମାନଙ୍କ ହେତୁ ବୁଅରମାନଙ୍କ ବାଣିଜ୍ୟ ଓ ବ୍ୟବସାୟରେ ବହୁ ବାଧା ଘଟୁଥିଲା । ଏହି କାରଣରୁ ସର୍ବଦା ଏ ଦୁଇ ଜାତି ମଧ୍ୟରେ କଳହ ଲାଗି ରହିଥାଏ । ୧୮୯୦ ଖ୍ରୀଷ୍ଟାବ୍ଦରେ ମଧ୍ୟ ବୁଅର ଏବଂ ଇଂରେଜମାନଙ୍କ ମଧ୍ୟରେ ଥରେ ଲଢ଼ାଇ ହୋଇ ଯାଇଥିଲା । ଇଂରେଜମାନେ ବୁଅରମାନଙ୍କର ଟ୍ରାନ୍ସଭାଲ ପ୍ରଦେଶରେ ନିଜର ଅଧିକାର ବିସ୍ତାର କରିବାକୁ ସର୍ବଦା ଚେଷ୍ଟା କରୁଥିଲେ । କ୍ରୁଗର ସାହେବ ଏହି ସମୟରେ ଟ୍ରାନ୍ସଭାଲର ସଭାପତି ଥିଲେ । ଏ ଜଣେ ବଡ଼ ନିର୍ଭୀକ ବୀରପୁରୁଷ । ସେ

ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଚନ୍ଦ୍ର ଯୁଦ୍ଧସାମଗ୍ରୀ ସଂଗ୍ରହ କରୁଥିଲେ । ଏହି କଥା ଜାଣି ପାରି ଏଣେ ଇଂରେଜମାନେ ମଧ୍ୟ ଯୁଦ୍ଧସାମଗ୍ରୀ ଆୟୋଜନ କରିବାକୁ ପ୍ରସ୍ତୁତ ହେଲେ । ବୁଅରମାନେ ଯୁଦ୍ଧ ଆୟୋଜନ ସକାଶେ ଇଂରେଜମାନଙ୍କୁ ସମୟ ନ ଦେଇ ହଠାତ୍ ଯୁଦ୍ଧ ଘୋଷଣା କଲେ ।

ଏହି ସମୟରେ "ମହାତ୍ମା ଗାନ୍ଧୀ" ଦେଖିଲେ ଯେ, ଏ ସୁବିଧା ପରିତ୍ୟାଗ କରିବା ଉଚିତ ନୁହେ । ଭାରତବାସିମାନଙ୍କର ରାଜଭକ୍ତି ଦେଖାଇବାପାଇଁ ଏହାହିଁ ପ୍ରକୃଷ୍ଟ ସମୟ । ସେ ମଧ୍ୟ ବୁଝିଥିଲେ ଯେ, ମନୁଷ୍ୟ ଯେଉଁଠାରେ ତାହାର ଅଧିକାର ନିମିତ୍ତ ଦାବୀ କରେ, ସେ ସ୍ଥାନ ପ୍ରତି ତାହାର ଯେ କର୍ତ୍ତବ୍ୟ, ତାହା ସମାଧାନ କରିବା ନିତାନ୍ତ ଆବଶ୍ୟକ । ଭାରତବାସିମାନେ ଦକ୍ଷିଣ ଆଫ୍ରିକାରେ ଇଂରେଜମାନଙ୍କ ପରି ପୂର୍ଣ୍ଣ ଅଧିକାର ଦାବି କରୁଅଛନ୍ତି । ଯଦି ସେମାନଙ୍କୁ ଇଂରାଜମାନଙ୍କ ସହିତ ମିଳିମିଶି ରହିବାକୁ ହୁଏ, ସେମାନଙ୍କ ବିପଦ ସମୟରେ ସାହାଯ୍ୟ ନ କରିବା ମନୁଷ୍ୟର ଧର୍ମ ନୁହେ । "ମହାତ୍ମା ଗାନ୍ଧୀ"ଙ୍କର ମଧ୍ୟ ପୂର୍ଣ୍ଣ ବିଶ୍ୱାସ ହେଲା କି, ଏହି ସମୟରେ ଭାରତବାସିମାନେ ଯଦି ସେମାନଙ୍କର ଯଥାଶକ୍ତି ସାହାଯ୍ୟ କରନ୍ତି, ତାହାହେଲେ ସେମାନଙ୍କର ସମସ୍ତ କଷ୍ଟ ଓ ଆପତ୍ତି ଦୂର ହୋଇଯିବ । ଏହିପରି ନାନା କାରଣରୁ ଏହି ଯୁଦ୍ଧରେ ଯୋଗ ଦେବା ସକାଶେ ସେ ଭାରତବାସିମାନଙ୍କୁ ଆହ୍ୱାନ କଲେ ଏବଂ ସରକାରଙ୍କ ନିକଟରେ ଭାରତବାସିମାନଙ୍କୁ ଯୁଦ୍ଧରେ ସାହାଯ୍ୟ ଦେବାପାଇଁ ଅନୁମତି ପ୍ରାର୍ଥନା କଲେ । ସେମାନେ ତାହାଙ୍କର କର୍ତ୍ତବ୍ୟ କରିବାକୁ ପ୍ରସ୍ତୁତ, କିନ୍ତୁ ଇଂରେଜମାନଙ୍କର ଶାସନନୀତି ପୃଥକ୍, ସେମାନେ ଭାରତବାସି-ମାନଙ୍କୁ ସୈନ୍ୟ ବିଭାଗରେ ପ୍ରବେଶ କରିବାର ସୁବିଧା ଦେବେ, ଏହା ସେମାନଙ୍କ ପକ୍ଷରେ ଅସମ୍ଭବ । ପୁଣି ଦକ୍ଷିଣ ଆଫ୍ରିକାରେ ଇଂରେଜ ଓ ଭାରତବାସିମାନଙ୍କ ମଧ୍ୟରେ ଯେପରି ଅସଦ୍‌ଭାବ ଥିଲା, ତହିଁରେ ବିଶେଷ ଅବା କଣ ଆଶା କରି ଯାଇ ପାରେ ? "ମହାତ୍ମା ଗାନ୍ଧୀ" କେବଳ କର୍ତ୍ତବ୍ୟର ଆହ୍ୱାନରେ ପ୍ରଣୋଦିତ

ହୋଇ ଏହି ସାହାଯ୍ୟ କରିବାକୁ ପ୍ରସ୍ତୁତ, ଏହା ସହଜରେ ସେମାନଙ୍କର ବାଞ୍ଛାସଯୋଗ୍ୟ ହେଲା ନାହିଁ । ସେଠାର ବ୍ୟବସ୍ଥାପକ ସଭାର ଜନୈକ ସଦସ୍ୟ ଜେମ୍‌ସ୍ ସାହେବଙ୍କ ସହ ଏହି ବିଷୟ ନେଇ ଗାନ୍ଧୀଙ୍କର ତର୍କ ହୋଇଥିଲା । ସାହେବ ମହୋଦୟ କହିଲେ, "ଲଢ଼ାଇ କଥା ଆପଣମାନଙ୍କୁ କଣ ଜଣା ଅଛି, ଯୁଦ୍ଧ କରିବା ତ ଦୂରର କଥା, ବରଂ ସୈନିକମାନଙ୍କର ଆପଣମାନେ ଗୋଟିଏ ବୋଝ ହେବେ । ଆପମାନଙ୍କୁ ରକ୍ଷା କରିବା ଆମ୍ଭମାନଙ୍କର ଆହୁରି ଗୋଟାଏ ଅଧିକ କାମ ହୋଇ ପଡ଼ିବ ।" ଏହା ଶୁଣି "ମହାତ୍ମା ଗାନ୍ଧୀ" କହିଥିଲେ, "ଆଚ୍ଛା, ଯୁଦ୍ଧ ନ କଲେ ସୁଦ୍ଧା ଏପରି କଣ କୌଣସି କାମ ନାହିଁ, ଯାହା କି ଆମ୍ଭେମାନେ କରି ପାରିବୁ ? ରଣକ୍ଷେତ୍ରରୁ ଆହତ ବ୍ୟକ୍ତିଙ୍କୁ ଉଠାଇ ହାସ୍‌ପାତାଲକୁ ନେବା କାର୍ଯ୍ୟ କଣ ଆମ୍ଭମାନଙ୍କଦ୍ୱାରା ହୋଇ ପାରିବ ନାହିଁ ?" ସାହେବ ମହୋଦୟ କହିଲେ, "ନା, ଏହା ମଧ୍ୟ ତୁମ୍ଭଦ୍ୱାରା ହୋଇ ପାରିବ ନାହିଁ । କାରଣ ସେ ଶିକ୍ଷା ତୁମ୍ଭମାନଙ୍କର ନାହିଁ ।" ପାଠକମାନେ ଟିକିଏ ଅପେକ୍ଷା କରନ୍ତୁ, ଦେଖି ପାରିବେ, ଯେ ଶିକ୍ଷା ଭାରତବାସୀମାନଙ୍କର ଅଛି କି ନାହିଁ ଏବଂ ସେ କାମ କାହାଦ୍ୱାରା ହେବ ।

ଏହି ପ୍ରାର୍ଥନା ଗ୍ରାହ୍ୟ ହେଲା ନାହିଁ ବୋଲି ଗାନ୍ଧୀ ହତୋତ୍ସାହ ହୋଇ ନ ଥିଲେ, ସେ ପୁନର୍ବାର ଚେଷ୍ଟା କରିବାକୁ ଲାଗିଲେ । ଏଣେ ଯୁଦ୍ଧ ଭୀଷଣ ଭାବରେ ଆରମ୍ଭ ହେଲା, ଦିନକୁଦିନ ଇଂରେଜମାନଙ୍କ ଅବସ୍ଥା ବଡ଼ ଶୋଚନୀୟ ହେବାକୁ ଲାଗିଲା । ବୁଅରମାନେ ଇଂରେଜମାନଙ୍କର ଅନେକ ବଡ଼ ବଡ଼ ସ୍ଥାନ ଅଧିକାର କରି ନେଲେ, ରେଳ ରାସ୍ତା, ତାର ଇତ୍ୟାଦି ନଷ୍ଟ କରି ପକାଇଲେ । ସୈନ୍ୟ ଓ ରସଦ ପଠାଇବା ତ ଦୂରର କଥା, କୌଣସି ସମ୍ବାଦ ନେବା ଆଣିବା ଅସମ୍ଭବ ହୋଇପଡ଼ିଲା । ଇଂରେଜମାନେ ମନେ କରିଥିଲେ ଯେ, ବୁଅରମାନଙ୍କୁ ଅଳ୍ପ ସମୟ ମଧ୍ୟରେ ପରାସ୍ତ କରିଦେବେ, ସୁତରାଂ ସେହି କାରଣରୁ ଗାନ୍ଧୀଙ୍କର ପ୍ରାର୍ଥନାକୁ ଗ୍ରାହ୍ୟ କରି ନ ଥିଲେ । କିନ୍ତୁ ବର୍ତ୍ତମାନ ଅବସ୍ଥା ବଡ଼ ଗୁରୁତର ଓ ପ୍ରାଣ ଆସି କଣ୍ଠାଗତ । ଯେଉଁ ଭାରତ-

ବାସିମାନଙ୍କୁ ବୋଝ ହେବେ ବୋଲି ଉପେକ୍ଷା କରଥିଲେ, ସେମାନଙ୍କ ସାହାଯ୍ୟ ଭିକ୍ଷା କରିବାକୁ ପଡ଼ିଲା । ବର୍ତ୍ତମାନ ଉପନିବେଶର ପ୍ରତ୍ୟେକ ବ୍ୟକ୍ତିର ସାହାଯ୍ୟ କରିବା କର୍ତ୍ତବ୍ୟ । "ମହାତ୍ମା ଗାନ୍ଧୀ" ମାନ ଅପମାନ କିଛି ନ ଭାବି କର୍ତ୍ତବ୍ୟ କରିବାକୁ ତତ୍ପର ହେଲେ ଏବଂ ଗୋଟିଏ "ଭାରତସ୍ୱେଚ୍ଛାସେବକଦଳ" ଗଠନ କଲେ । କିନ୍ତୁ ଏତେବଡ଼ ଯୁଦ୍ଧରେ ସେବା ଶୁଶ୍ରୂଷା କରିବା ସକାଶେ ଗାନ୍ଧୀଙ୍କ ପାଖରେ ଥିବା ଲୋକେ ଯଥେଷ୍ଟ ନୁହନ୍ତି । ସେଠାର କଳକାରଖାନାରେ କାମ କରୁଥିବା ଭାରତୀୟ କୁଲିମାନଙ୍କୁ ଏହି କାର୍ଯ୍ୟରେ ଯୋଗ ଦେବାକୁ ସେମାନଙ୍କର ମାଲିକମାନେ ଛାଡ଼ିଦେଲେ । ଏମାନଙ୍କର ଗୋଟିଏ ସ୍ୱତନ୍ତ୍ର ଦଳ ଗଠିତ ହେଲା । ଏହିପରି ଯୁଦ୍ଧକ୍ଷେତ୍ରରେ ସାହାଯ୍ୟ କରିବା ନିମିତ୍ତ ବର୍ତ୍ତମାନ "ମହାତ୍ମା ଗାନ୍ଧୀ" ଅଗ୍ରସର ।

ରଣକ୍ଷେତ୍ରର ଦୃଶ୍ୟ ଅତ୍ୟନ୍ତ ଭୟଙ୍କର । ଭୀଷଣ ଭାବରେ ଯୁଦ୍ଧ ଲାଗିଅଛି, ଶତ ଶତ ହତ ଓ ଆହତ ହୋଇ ପଡ଼ୁଅଛନ୍ତି, ଗୁଳି ଓ ତୋପର ଅଜସ୍ର ବର୍ଷଣ ଚାଲିଅଛି । ଏହି ସମୟରେ "ମହାତ୍ମା ଗାନ୍ଧୀ" ସେଠାରେ ଉପସ୍ଥିତ । ଏମାନଙ୍କର କାର୍ଯ୍ୟ—ଆହତ ବ୍ୟକ୍ତିମାନଙ୍କୁ ଉଠାଇ ନେଇ ହାସ୍ପାତାଲରେ ରଖିବା । ରଣକ୍ଷେତ୍ରରେ ନିୟମ ହେଉଅଛି—ଯୁଦ୍ଧର ତେଜ ଟିକିଏ କମି ଆସିଲେ ଆହତ ବ୍ୟକ୍ତିମାନଙ୍କୁ ଯୁଦ୍ଧକ୍ଷେତ୍ରରୁ ଉଠାଇ ନେବା, କିନ୍ତୁ "ମହାତ୍ମା ଗାନ୍ଧୀ" ନିଜର ଇଚ୍ଛାନୁସାରେ ଉକ୍ତ ନିୟମ ଲଙ୍ଘନ କରି ଘୋରଯୁଦ୍ଧ ଲାଗିଥିବା ସମୟରେ ଆହତ ସୈନ୍ୟମାନଙ୍କୁ ଉଠାଇ ନେଇ ଆସୁଥିଲେ । ଆହତ ସୈନ୍ୟମାନଙ୍କୁ ଉଠାଉ ଉଠାଉ କେତେକ କାରଣରୁ ସ୍ୱେଚ୍ଛାସେବକ ମଧ୍ୟ ହତ ହେଲେ ! ଭାରତବାସିଙ୍କର ଏପରି ନିର୍ଭୀକତା, ଆତ୍ମୋତ୍ସର୍ଗ ଓ ଅଟଳ କର୍ତ୍ତବ୍ୟ ପାଳନ ଦେଖି ସମସ୍ତେ ଚକିତ ହେବାକୁ ଲାଗିଲେ । ଗୋଟିଏ ବିଶେଷ ଘଟଣା ଏହି ଯେ, ଇଂରେଜ ସେନାପତି ଲର୍ଡ୍ ରବର୍ଟଙ୍କର ଏକମାତ୍ର ପୁତ୍ର ରଣକ୍ଷେତ୍ରରେ ଆହତ ହେଲେ । ଭାରତୀୟ ସେବକଗଣ ଏହାଙ୍କୁ ଉଠାଇ ସାତ ମାଇଲ ଦୂରରେ ଥିବା ଗୋଟିଏ

ହାସପାତାଲକୁ ନେଇ ଯାଇଥିଲେ । ଏହିପରି ସେମାନେ ଯେ କେତେ ବୀରତ୍ୱର କାର୍ଯ୍ୟ କରିଥିଲେ, ତାହାର ଇୟତ୍ତା ନାହିଁ । ଯୁଦ୍ଧକ୍ଷେତ୍ରରେ ଏହି ଯେ ଭୀଷଣ ଅଭିଜ୍ଞତା ତାହା ଅଦ୍ୟାପି "ମହାତ୍ମା ଗାନ୍ଧୀଙ୍କ" ହୃଦୟରେ ଜାଗ୍ରତ ଅଛି ।

ଯୁଦ୍ଧ ସମାପ୍ତ ହେଲା, ବୁଅରମାନେ ଯୁଦ୍ଧରେ ପରାଜିତ ହେଲେ, ଏହି ବିପଦ ସମୟରେ ଭାରତବାସୀମାନେ ଯେପରି ସାହାଯ୍ୟ କରିଥିଲେ, ତହିଁରେ ଦକ୍ଷିଣ ଆଫ୍ରିକାର ଇଂରେଜମାନେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ । ଯେଉଁ ଭାରତବାସୀମାନେ ଯୁଦ୍ଧରେ ହତ ହେଲେ, ସେମାନଙ୍କର ଗୋଟିଏ ସ୍ମୃତି ମନ୍ଦିର ନିର୍ମିତ ହେଲା । ଗାନ୍ଧୀଙ୍କୁ ଗୋଟିଏ ପଦକ ମଧ୍ୟ ଉପହାର ମିଳିଥିଲା ।

ସମସ୍ତ ସମ୍ବାଦପତ୍ରରେ ଭାରତବାସୀମାନଙ୍କ କାର୍ଯ୍ୟର ଜୟଧ୍ୱନି ପ୍ରକାଶିତ ହେଲା । ଏହି ସବୁ ଘଟଣା ଦେଖି ମହାତ୍ମା ଗାନ୍ଧୀ ମନେ କଲେ, ଭାରତବାସୀମାନଙ୍କ ଦୁଃଖ ଦୁର୍ଦ୍ଦଶା ଅସି ଶେଷ ହେଲା । ଭାରତବାସିଙ୍କର ମଧ୍ୟ ବିଶ୍ୱାସ ହେଲା ଯେ, ସରକାର ସେମାନଙ୍କ ପ୍ରତି ଆଉ ଉଦାସୀନ ରହି ପାରିବେ ନାହିଁ । ଏହିପରି ଅବସ୍ଥାରେ ସେଠାରେ ଗାନ୍ଧୀଙ୍କର ରହିବା ନିଷ୍ପ୍ରୟୋଜନ ଭାବି ୧୯୦୧ ଖ୍ରୀଷ୍ଟାବ୍ଦରେ "ମହାତ୍ମା ଗାନ୍ଧୀ" ଭାରତକୁ ଫେରିବାକୁ ପ୍ରସ୍ତୁତ ହେଲେ । ତାହାଙ୍କ ନିମିତ୍ତ ଗୋଟିଏ ବିଦାୟସଭା ଆହୂତ ହୋଇଥିଲା । ଏହି ସଭାରେ ବହୁମୂଲ୍ୟବାନ୍ ହାର, ପଦକ ଓ ସୁବର୍ଣ୍ଣର ପାନ ପ୍ରଭୃତି "ମହାତ୍ମା ଗାନ୍ଧୀଙ୍କୁ" ଉପଢୌକନ ମିଳିଥିଲା, କିନ୍ତୁ ସେ ଏ ସମସ୍ତ କିଛି ଗ୍ରହଣ ନ କରି ସେଠାର ଭାରତବାସୀମାନଙ୍କର କଲ୍ୟାଣ ନିମିତ୍ତ ଦାନ କରିଦେଲେ । ତାହାଙ୍କର ଏହିପରି ନିଃସ୍ୱାର୍ଥତା ଓ ଉଦାରତାର ପରିଚୟ ପାଇ ସମସ୍ତେ ଚକିତ ହୋଇ ଯାଇଥିଲେ । "ମହାତ୍ମା ଗାନ୍ଧୀ" ଯଥା ସମୟରେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ ଓ ଦକ୍ଷିଣ ଆଫ୍ରିକାରେ ଶାନ୍ତି ସ୍ଥାପିତ ହେଲା ।



## ସପ୍ତମ ଅଧ୍ୟାୟ ।



### ନୂତନ ବିପଦ ।

ଭାରତବର୍ଷକୁ ଫେରି ଆସି "ମହାତ୍ମା ଗାନ୍ଧୀ" ପୂର୍ବପରି ବୋମ୍ବେଇ ସହରରେ ବାରିଷ୍ଟରୀ ଆରମ୍ଭ କଲେ । ସେ ମନେ କରିଥିଲେ ଯେ, ଦକ୍ଷିଣ ଅଫ୍ରିକାର କାର୍ଯ୍ୟ ଶେଷ ହୋଇଅଛି, ସରକାର ପ୍ରବାସୀ ଭାରତବାସୀମାନଙ୍କର ଉପଯୁକ୍ତ ବ୍ୟବସ୍ଥା କରିବେ, କିନ୍ତୁ ଗାନ୍ଧୀଙ୍କର ଏ ଭ୍ରମ ଶୀଘ୍ର ଦୂର ହେଲା । ଦକ୍ଷିଣ ଅଫ୍ରିକାରେ ସରକାର ଭାରତବାସିଙ୍କ ପ୍ରତି ଯେ ବ୍ୟବହାର ଦେଖାଇଲେ, ତାହା ନିତାନ୍ତ ଅନୁପଯୁକ୍ତ ଓ ଅତ୍ୟାଚାରପୂର୍ଣ୍ଣ । ସରକାର ଭାରତବାସିଙ୍କ ଶାସନ ନିମନ୍ତେ ଗୋଟିଏ ନୂତନ ବିଭାଗ ଖୋଲିଅଛନ୍ତି, ତହିଁର କର୍ମଚାରୀମାନେ ଅତ୍ୟନ୍ତ ଦୁରାଚାର, ଏହିସମୟରେ ମଧ୍ୟ ମିଷ୍ଟର ଚେମ୍ବରଲେନ୍‌ଙ୍କର ଦକ୍ଷିଣ ଅଫ୍ରିକାକୁ ଯିବାର କଥା ହେଲା । ଭାରତବାସୀମାନେ ତାହାଙ୍କ ନିକଟରେ ଅଭାବ ଓ ଅଭିଯୋଗ ଜଣାଇବାକୁ ଉଦ୍ୟତ, ହେଲେ କିନ୍ତୁ "ମହାତ୍ମା ଗାନ୍ଧୀ" ନ ହେଲେ ସେ କାର୍ଯ୍ୟ କରିବ କିଏ ? ସୁତରାଂ ତାହାଙ୍କ ନିକଟକୁ ତାର ଖବର ଆସିଲା, କୌଣସି ପ୍ରକାରେ ଦକ୍ଷିଣ ଅଫ୍ରିକାକୁ ନ ଗଲେ ନ ଚଳେ । କଣ କରିବେ, ସ୍ୱଦେଶବାସିଙ୍କର ଏ ଅନୁରୋଧକୁ ଏଡି ପାରିଲେ ନାହିଁ । ପୁନର୍ବାର ଦକ୍ଷିଣ ଅଫ୍ରିକାକୁ ଯିବାକୁ ପଡିଲା । ୧୯୦୩ ଖ୍ରୀଷ୍ଟାବ୍ଦରେ ଜାନୁଆରି ପହିଲା ତାରିଖ ଦିନ ପୁଣି ପ୍ରିଟୋରିଆରେ ଉପସ୍ଥିତ ହେଲେ । ଉପସ୍ଥିତ ହୋଇ ଦେଖିଲେ ଯେ, ଭାରତବାସିଙ୍କର ଦଶା ଅତି ଶୋଚନୀୟ । ଭବିଷ୍ୟତରେ କଣ ଅଛି କିଏ ଜାଣେ । ଏହା ଦେଖି "ମହାତ୍ମା ଗାନ୍ଧୀ" ଦକ୍ଷିଣ ଅଫ୍ରିକାର ଅନ୍ୟାୟ ଓ ଅତ୍ୟାଚାରରେ ପ୍ରପୀଡ଼ିତ ଭାରତବାସିମାନଙ୍କର ଦୁଃଖ ଦୂର କରିବାପାଇଁ ନିଜକୁ ପୁନର୍ବାର ଉତ୍ସର୍ଗ କଲେ ।

ପାଠକମାନେ ଅବଗତ ଅଛନ୍ତି, ଦକ୍ଷିଣ ଅଫ୍ରିକାର ଗୋରାମାନେ ଗାନ୍ଧୀଙ୍କ ଉପରେ କିପରି ବିରକ୍ତ । ଗାନ୍ଧୀ ଯେପରି ସେଠାରେ ଯାଇ ଉପସ୍ଥିତ

ହେଲେ, ସେମାନଙ୍କର କ୍ରୋଧର ସୀମା ରହିଲା ନାହିଁ । ସାହାଯ୍ୟ ଓ ସହାନୁଭୂତି ପାଇବା ତ ଦୂରର କଥା, ଅନେକେ ମଧ୍ୟ ଗାନ୍ଧୀଙ୍କ ସହିତ ସାକ୍ଷାତ୍ କରିବାକୁ ନାସ୍ତି କଲେ । ସେହି ସମୟର ଉପନିବେଶର ସେକ୍ରେଟେରୀ ଡେଭିଡ୍‌ସନ୍ ସାହେବଙ୍କ ସହିତ ଦେଖା କରିବା ସକାଶେ "ମହାତ୍ମା ଗାନ୍ଧୀ" ଅନେକ ଚେଷ୍ଟା କଲେ । ବହୁ ଚେଷ୍ଟା ପରେ ଥରେ ସେହି ସାହେବଙ୍କ ସହିତ ତାହାଙ୍କର ଦେଖା ହେଲା, କିନ୍ତୁ ଗାନ୍ଧୀ ଯେଉଁ ବିଷୟ ନେଇ ଅଳାପ କରିବାକୁ ଯାଇଥିଲେ, ସେ ବିଷୟ ସମ୍ବନ୍ଧରେ ସାହେବ କିଛି ଶୁଣିଲେ ନାହିଁ । ତାହାଙ୍କର ନିମ୍ନସ୍ଥ କର୍ମଚାରୀଙ୍କ ସହ ଉକ୍ତ ବିଷୟରେ ପରାମର୍ଶ କରିବାକୁ କହି ଚାଲିଗଲେ । ଉକ୍ତ ନିମ୍ନସ୍ଥ ବ୍ୟକ୍ତିଟି ଭଦ୍ରତା ରକ୍ଷି କିପରି କାର୍ଯ୍ୟ କରିବାକୁ ହୁଏ ଜାଣନ୍ତି ନାହିଁ । ଏଣୁ ସେ ସେଠାର ଅବସ୍ଥାପନ୍ନ ଲୋକମାନଙ୍କୁ ଡକାଇ କହିଲେ କି ପୁନର୍ବାର ଗାନ୍ଧୀଙ୍କୁ ଦକ୍ଷିଣ ଆଫ୍ରିକାକୁ ଡାକିବାର କୌଣସି ପ୍ରୟୋଜନ ନ ଥିଲା । ସେମାନଙ୍କପାଇଁ ଯାହା କରିବାର କଥା, ସେକ୍ରେଟେରୀ ସାହେବ ତାହା କରିବେ । ସେମାନେ ଗାନ୍ଧୀଙ୍କୁ ଏଠାକୁ ଡାକି ଉଚିତ କାର୍ଯ୍ୟ କରି ନାହାନ୍ତି । ଏଥିରେ ସେକ୍ରେଟେରୀ ସାହେବ ବଡ଼ ଅସନ୍ତୁଷ୍ଟ । ସେ ଚାହାନ୍ତି, ଗାନ୍ଧୀଙ୍କ ସହିତ ଯେପରି ଏଣିକି ସେମାନଙ୍କର କୌଣସି ସମ୍ପର୍କ ନ ରହେ । ଏହିପରି ଭାରତବାସୀମାନଙ୍କୁ ଭର୍ତ୍ସନା କରି, ପରେ ଗାନ୍ଧୀଙ୍କୁ ଡାକି କହିଥିଲେ, "ଭାରତବାସିଙ୍କ ପାଇଁ ଯାହା କରିବା ଦରକାର, ତାହା ସେକ୍ରେଟେରୀ ସାହେବ କରିବେ, ତୁମ୍ଭର ଏଠାକୁ ଅସିବାର ପ୍ରୟୋଜନ କଣ ?" କିନ୍ତୁ ଏ ଧମକରେ ହାରି ଗାନ୍ଧୀ ଡରିବାର ଲୋକ ନୁହନ୍ତି । ଏ ସବୁ କିଛି ମନକୁ ନ ନେଇ ତାହାଙ୍କର ଯାହା କରିବାର କଥା, ତାହା ସେ କରିବାକୁ ଲାଗିଲେ । ସେ ଗୋଟିଏ ପ୍ରତିନିଧି-ଦଳ ( deputation ) ଗଠନ କଲେ ଏବଂ ମିଷ୍ଟର ଯୋସେଫ୍ ଚେମ୍ବରଲେନଙ୍କ ନିକଟକୁ ପଠାଇବାର ବ୍ୟବସ୍ଥା କଲେ । ସେ ନିଜେ ତାହାର ନେତୃତ୍ୱ ଭାର ନେଇ ଔପନିବେଶିକ ଭାରତବାସିଙ୍କର ଅଭାବ ପରିସ୍କାରରୂପେ ଔପନିବେଶିକ ସଚିବ ଚେମ୍ବରଲେନଙ୍କୁ ବୁଝାଇ ଦେଇଥିଲେ । ଏହିପରି ଭିନ୍ନ ଭିନ୍ନ ସ୍ଥାନରୁ ଡେପୁଟେଶନ୍ ଯାଇଥିଲେ, ପ୍ରତ୍ୟେକ ସ୍ଥାନରେ

କର୍ମଚାରୀମାନେ ଗାନ୍ଧୀଙ୍କ ବିଷୟ ନେଇ ବହୁ ପ୍ରତିବାଦ ଉଠାଇଥିଲେ । କିନ୍ତୁ ଭାରତବାସିମାନେ ବୁଝିଥିଲେ ଯେ "ମହାତ୍ମା ଗାନ୍ଧୀ" ନ ରହିଲେ ସେମାନଙ୍କ କଥା କେହି ଶୁଣିବେ ନାହିଁ । ସୁତରାଂ ଭାରତବାସିମାନେ ଏକ-ସ୍ୱରରେ ସରକାରଙ୍କୁ ଶୁଣାଇ ଦେଇଥିଲେ ଯେ, ଗାନ୍ଧୀଙ୍କୁ ଛାଡ଼ି ସେମାନେ ସରକାରଙ୍କ ସହିତ କୌଣସିପ୍ରକାର ବ୍ୟବସ୍ଥା କରିବାକୁ ପ୍ରସ୍ତୁତ ନୁହନ୍ତି ।

୧୯୦୪ ଖ୍ରୀଷ୍ଟାବ୍ଦରେ ଜୋହାନ୍ସବର୍ଗରେ ପ୍ଲେଗରୋଗ ଆରମ୍ଭ ହେଲା । ଏହା ଯେ କି ଭୟଙ୍କର, ତାହା ସେଠାର ମ୍ୟୁନିସିପାଲିଟିର କର୍ମଚାରୀମାନେ ଜାଣନ୍ତି ନାହିଁ । କିନ୍ତୁ ପ୍ଲେଗରୋଗର ସୂଚନା ଆଗରୁ ପାଇ ଗାନ୍ଧୀ ମ୍ୟୁନିସିପାଲିଟିକୁ ସାବଧାନ କରାଇ ଦେଇଥିଲେ। ବିଶେଷତଃ ଭାରତବାସିମାନେ ଯେଉଁ ପଡ଼ାରେ ଥାନ୍ତି, ସେହିଠାରେ ପ୍ଲେଗ ହେବାର ଖୁବ୍ ସମ୍ଭାବନା, ଏହା ଗାନ୍ଧୀଙ୍କୁ ଭଲରୂପେ ଜଣାଥିଲା । ମ୍ୟୁନିସିପାଲିଟିକୁ ଏହା ଭଲରୂପେ ଜଣାଇ ଦିଆଯାଇଥିଲେ ମଧ୍ୟ ସେମାନେ ତହିଁରେ କିଛି ପ୍ରତିକାର କଲେ ନାହିଁ । ଦିନେ ହଠାତ୍ ପ୍ଲେଗରେ ୧୬ ଜଣ ଭାରତବାସିଙ୍କର ମୃତ୍ୟୁ ହେଲା । ଏହି ସମ୍ବାଦ ପାଇ ଗାନ୍ଧୀ ଆଉ ସ୍ଥିର ରହି ପାରିଲେ ନାହିଁ । ମ୍ୟୁନିସିପାଲିଟିକୁ ଅପେକ୍ଷା ନ କରି କେତେଗୁଡ଼ିଏ ସ୍ୱେଚ୍ଛାସେବକ ନେଇ ପ୍ଲେଗରୋଗିଙ୍କର ସେବାଶୁଶ୍ରୂଷା କାର୍ଯ୍ୟ ଆରମ୍ଭ କରିଦେଲେ । ଦିନକୁ ଦିନ ଅବସ୍ଥା ଗୁରୁତର ହେବାକୁ ଲାଗିଲା । ମ୍ୟୁନିସିପାଲିଟି କର୍ମଚାରୀମାନଙ୍କର ଚୈତନ୍ୟ ଉଦୟ ହେଲା । ଗାନ୍ଧୀଙ୍କର ଦେଖା ଶିଖାରେ ସେମାନେ କିଛି କାର୍ଯ୍ୟ କରିବାକୁ ଆରମ୍ଭ କଲେ । କିନ୍ତୁ ଭାରତବାସିମାନେ ଚେଷ୍ଟାରୁ ବିରତ ହେଲେ ନାହିଁ । ସେମାନେ ଗୋଟିଏ ସଭା କରି ଅନେକ ଟଙ୍କା ଚାନ୍ଦା ସଂଗ୍ରହ କଲେ । କେହି କେହି ସ୍ୱେଚ୍ଛାସେବକ ହୋଇ ଗାନ୍ଧୀଙ୍କ ସହିତ ଯୋଗ ଦେଲେ । କିନ୍ତୁ କେହି ଥରେ ଗୋଟିଏ ରୋଗିର ସେବା କଲା ପରେ ଆଉ ଥରେ ଆଉ ଗୋଟିଏ ପ୍ଲେଗରୋଗିକୁ ସେବା କରିବାକୁ ତାହାର

ସାହସ ହେଉ ନ ଥିଲା । ଏଥିପାଇଁ ଗାନ୍ଧୀଙ୍କୁ ଅକ୍ଲାନ୍ତ ଭାବରେ କାର୍ଯ୍ୟ କରିବାକୁ ପଡ଼ିଥିଲା । ଏହିପରି ଯଥାସମୟରେ କାର୍ଯ୍ୟ ଆରମ୍ଭ ହୋଇଥିଲେ ସୁଦ୍ଧା ଏକମାସ ପର୍ଯ୍ୟନ୍ତ ପ୍ଲେଗ ବ୍ୟାପି ରହିଲା । ଏହି ଏକମାସ ମଧ୍ୟରେ ପ୍ରାୟ ଏକଶତାଧିକ ଲୋକ ମୃତ୍ୟୁମୁଖରେ ପତିତ ହେଲେ । ୨୨ ଜଣ ଶ୍ୱେତାଙ୍ଗ ମଧ୍ୟ ଏଥିରେ ପ୍ରାଣ ହରାଇ ଥିଲେ । କିନ୍ତୁ ଗାନ୍ଧୀ ଯଦି ଠିକ ସମୟରେ କାର୍ଯ୍ୟ ଆରମ୍ଭ କରି ନ ଥାନ୍ତେ, ସମସ୍ତ ଜୋହାନ୍ସବର୍ଗଟି ଶ୍ମଶାନରେ ପରିଣତ ହୋଇଥାନ୍ତା । ପ୍ଲେଗରୋଗ ଶାନ୍ତ ହେଲା । ଗାନ୍ଧୀ ବର୍ତ୍ତମାନ ନିଶ୍ଚୟ କଲେ ଯେ, ପୁଣି ତାହାଙ୍କୁ ଦକ୍ଷିଣଅଫ୍ରିକାରେ ସ୍ଥିରଭାବରେ ରହିବାକୁ ପଡିବ ।

"ମହାତ୍ମା ଗାନ୍ଧୀ" ବର୍ତ୍ତମାନ ଦେଖିଲେ ଯେ ଦକ୍ଷିଣଅଫ୍ରିକାରେ ରହି ଭଲକରି କାର୍ଯ୍ୟାରମ୍ଭ କରିବାକୁ ହେଲେ ଖଣ୍ଡିଏ ସମ୍ବାଦପତ୍ର ଆବଶ୍ୟକ । ଏହାର ଅଭାବରେ ଭାରତବାସିମାନଙ୍କର ଅଭାବ ଅଭିଯୋଗ ସବୁ ପ୍ରଚାରିତ ହୋଇ ପାରୁ ନାହିଁ । ଅଧିକନ୍ତୁ ମଧ୍ୟ ଭାରତବାସିମାନଙ୍କୁ ରାଜନୈତିକ ଓ ସାମାଜିକ ଶିକ୍ଷା ଦେବାକୁ ହେଲେ ଖଣ୍ଡେ ସମ୍ବାଦପତ୍ରର ବିଶେଷ ପ୍ରୟୋଜନ । ଏହି ସବୁ କଥା ଭାବି ୧୯୦୩ ଖ୍ରୀଷ୍ଟାବ୍ଦରେ " ଭାରତମତ " ( Indian opinion ) ନାମକ ଖଣ୍ଡିଏ ସମ୍ବାଦପତ୍ରର ପ୍ରତିଷ୍ଠା କଲେ । ପ୍ରଥମରେ କାଗଜଖଣ୍ଡି ଇଂରେଜୀ, ଗୁଜରାଟି, ହିନ୍ଦୀ ଓ ତାମିଲ୍ ଏହି ଚାରିଭାଷାରେ ମୁଦ୍ରିତ ହେଉଥିଲା । କିନ୍ତୁ ପରେ ବିଶେଷ ଅସୁବିଧା ହେବାରୁ ହିନ୍ଦୀ ଓ ତାମିଲ୍ ଭାଷା ପରିତ୍ୟକ୍ତ ହେଲା । ଏହି କାଗଜ ଖଣ୍ଡିକ ଦକ୍ଷିଣଅଫ୍ରିକା କାର୍ଯ୍ୟରେ ଗାନ୍ଧୀଙ୍କୁ ବହୁତ ସାହାଯ୍ୟ କରିଥିଲା ।

ଏହିପରି ନାନାକାର୍ଯ୍ୟରେ ଗାନ୍ଧୀ ବ୍ୟସ୍ତ ହୋଇ ପଡ଼ିଲେ । ନାନା-କାର୍ଯ୍ୟରେ ବ୍ୟସ୍ତ ଥାଇ ମଧ୍ୟ ସେ ବହୁବିଧ ଧର୍ମଗ୍ରନ୍ଥ ପଠନରୁ ବିରତ ହୋଇ ନ ଥିଲେ । ଗାନ୍ଧୀଙ୍କର ହୃଦୟ ଭିତରେ ଜୀବନସମସ୍ୟାର ଏକ

ପ୍ରବଳ ସଂଗ୍ରାମ ସର୍ବଦା ଚାଲିଥାଏ । ସେ କୌଣସି ସ୍ଥିର ମୀମାଂସାରେ ଉପସ୍ଥିତ ହୋଇପାରୁ ନ ଥାନ୍ତି । ଜମି ତୟାର ଥାଏ ସତ, କିନ୍ତୁ କେଉଁ ବୀଜ ତହିଁରେ ବପନ କଲେ ଆଶାନୁରୂପ ଫଳ ଫଳିବ, ଏହି ଚିନ୍ତାରେ ବୁଡ଼ି ରହିଥିବା ସମୟରେ "ମହାତ୍ମା ଗାନ୍ଧୀ" ଇଂରେଜ ଦାର୍ଶନିକ ରସ୍କିନଙ୍କର "ଅନ୍ଟୁ ଦିସ୍ ଲଷ୍ଟ" (On to this last) ନାମକ ପୁସ୍ତକ ଖଣ୍ଡି ପଢ଼ିବାକୁ ପାଇଲେ । ଏହାକୁ ପଢ଼ି ତାହାଙ୍କ ଜୀବନରେ ଏକ ଅଦ୍ଭୁତ ପରିବର୍ତ୍ତନ ଉପସ୍ଥିତ ହେଲା । ଗାନ୍ଧୀ ଅନେକ ସମୟରେ ଘରେ ବସି ନିଜ ଲୋକମାନଙ୍କ ସଙ୍ଗେ ଗପ କରୁଥିବା ସମୟରେ ଏହି ପୁସ୍ତକଟିଦ୍ୱାରା ତାଙ୍କ ଭାବଗତି କିପରି ପରିବର୍ତ୍ତିତ ହୋଇଥିଲା ତାହା କହୁଥାନ୍ତି । ଏହି ପୁସ୍ତକଟି ପଢ଼ିଲା ପରେ ମହାତ୍ମା ଗାନ୍ଧୀ ସ୍ଥିର କଲେ, ଦେଶର ପ୍ରକୃତ ସେବକ ହେବାକୁ ହେଲେ ମନୁଷ୍ୟର କଠୋର ତପସ୍ୟା ଆବଶ୍ୟକ । କିନ୍ତୁ ଏହି ତପସ୍ୟା ସହରରେ ସାଧାରଣ ଲୋକଙ୍କ ପରି ରହି କରି ହେବ ନାହିଁ । ଏଥିପାଇଁ ସହରର ଗୋଳମାଳରୁ ଦୂରରେ ରହିବା ନିତାନ୍ତ ଆବଶ୍ୟକ ।

ଡରବାନ୍ ବନ୍ଦର ନିକଟରୁ ୬ କ୍ରୋଶ ଦୂରରେ ଫିନିକ୍ସ ନାମକ ଗୋଟିଏ ସ୍ଥାନ ଅଛି । ସ୍ଥାନଟି ଅତି ମନୋହର ଏବଂ ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ମନରେ ସ୍ୱତଃ ଧର୍ମର ଭାବ ଜାଗ୍ରତ କରାଇ ଦିଏ । ଏହି ସ୍ଥାନରେ କିଛି ଜାଗା ନେଇ ମହାତ୍ମା ଗାନ୍ଧୀ ଗୋଟିଏ ଆଶ୍ରମ ସ୍ଥାପନ କଲେ । ନିଜେ ଅନ୍ୟାନ୍ୟ ସହଯୋଗିମାନଙ୍କ ସହିତ ସେଠାରେ ବାସ କଲେ । ଏହିଠାରେ ତାଙ୍କ ଜୀବନର କଠୋର ତପସ୍ୟା ଆରମ୍ଭ ହେଲା । ସେଠା ଆଶ୍ରମର ନିୟମ ଏହି ଯେ, ପ୍ରତ୍ୟେକଙ୍କୁ ଅତି ସରଳ ଓ ଦୀନଭାବରେ ଜୀବନଯାପନ କରିବାକୁ ହେବ । ନିଜର ସାମାନ୍ୟ ଖରଚ ଛଡ଼ା ବେଶି କେହି କିଛି ପାଇ ପାରିବେ ନାହିଁ । ପ୍ରତ୍ୟେକଙ୍କୁ ସେଠାରେ ହାତରେ ଲଙ୍ଗଳ ବୁଲାଇ କୃଷି କରି ଖାଇବାକୁ ହେବ । ପ୍ରତ୍ୟେକଙ୍କୁ ନିଜର କାର୍ଯ୍ୟ ନିଜ ହାତରେ କରିବାକୁ ପଡ଼ିବ । ରୋଷାଇଠାରୁ ଆରମ୍ଭ କରି ପାଇଖାନା ସଫା ପର୍ଯ୍ୟନ୍ତ ସମଗ୍ର କାର୍ଯ୍ୟ

ନିଜ ହାତରେ କରିବାକୁ ହେବ । ଗାନ୍ଧୀ ନିଜେ ସେହି ସ୍ଥାନକୁ ଯାଇ ସମସ୍ତ କାର୍ଯ୍ୟ ଆରମ୍ଭ କରି ଦେଲେ ତାହାଙ୍କର ଏପରି କଷ୍ଟସାଧନାରେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିଲେ । ଏହି ସମୟରେ ତାହାଙ୍କୁ କପରି କଠୋର ପରିଶ୍ରମ କରିବାକୁ ପଡ଼ୁଥିଲା, ଅନେକ ସମୟରେ ସେ ଆମ୍ଭମାନଙ୍କୁ ଉତ୍ସାହ ଦେବାପାଇଁ କହୁଥାନ୍ତି । ସେ ନିଜେ ଆଶ୍ରମବାସିଙ୍କପାଇଁ ରୋଷାଇ କରୁଥିଲେ, ସମସ୍ତଙ୍କର ଖାଇବା ପିଇବାର ତତ୍ତ୍ୱ ନେଉଥିଲେ, ଆଶ୍ରମରେ ଯେତେ ସ୍ତ୍ରୀ ଥିଲେ, ସେମାନଙ୍କର ଶୁଶ୍ରୂଷା କରୁଥିଲେ । ଏହା ଛଡ଼ା "ଭାରତ ମତ" ( Indian opinion ) ନାମକ କାଗଜଟିର ଲେଖାଲେଖି ଆଦି ସମସ୍ତ କାର୍ଯ୍ୟ ନିଜ ହାତରେ କରୁଥିଲେ । ଏପରି କି, କମ୍ପୋଜ କରିବା ଓ ନିଜ ହାତରେ କଳ ଚଳାଇ କାଗଜ ଛପାଇବା ଇତ୍ୟାଦି କାର୍ଯ୍ୟ କାହାରି ବିନା ସାହାଯ୍ୟରେ ନିଜେ କରୁଥିଲେ । ରାତ୍ରରେ ଖଣ୍ଡିଏ କମ୍ବଳ ନେଇ କାନିଏ ପକାଇ ଏବଂ କାନିଏ ଘୋଡ଼ାଇ ହୋଇ ମାଟିରେ ଶୋଇଥାନ୍ତି । ଏହିପରି ଦକ୍ଷିଣ ଆଫ୍ରିକାରେ ଗୋଟିଏ ସମ୍ବାଦପତ୍ର ଓ ଆଶ୍ରମ ପ୍ରତିଷ୍ଠା ହେଲା । ଏହି ଆଶ୍ରମ ଓ ସମ୍ବାଦପତ୍ର ନ ଥିଲେ ମହାତ୍ମା ଗାନ୍ଧୀଙ୍କର ଦୀର୍ଘକାଳବ୍ୟାପୀ ସତ୍ୟାଗ୍ରହ ଲଢ଼ାଇ ଦକ୍ଷିଣ ଆଫ୍ରିକାରେ ସଫଳ ହୋଇଥାନ୍ତା କି ନାହିଁ ସନ୍ଦେହ । ଏହିପରି କଠୋର ସାଧନାରେ ଶରୀର ଦୁର୍ବଳ ହୋଇ ପଡ଼ିଲା । ମନ ଶାନ୍ତଭାବ ଧାରଣ କଲା । ଗାନ୍ଧୀଙ୍କ ମୁଖରେ ଗୋଟିଏ ଜ୍ୟୋତିର ଆଭା ପ୍ରକାଶ ପାଇଲା । ଏହି ସମୟଠାରୁ ସେ ମହାତ୍ମା ନାମରେ ପରିଚିତ ।



# ଅଷ୍ଟମ ଅଧ୍ୟାୟ ।



ଦକ୍ଷିଣ ଅଫ୍ରିକାରେ ଅନେକଗୁଡ଼ିଏ ଆଦିମନିବାସୀ ଲୋକ ଅଛନ୍ତି, ସେମାନଙ୍କ ମଧ୍ୟରେ ଜୁଲୁ ଗୋଟିଏ ଜାତି ଅଛନ୍ତି । ୧୯୦୬ ଖ୍ରୀଷ୍ଟାବ୍ଦରେ ଏହି ଜୁଲୁ ଜାତିର ଲୋକମାନେ ବିଦ୍ରୋହ କରି ଉଠିଲେ । ଏମାନଙ୍କୁ ଦମନ କରିବା ସକାଶେ ସରକାର ଅନେକପ୍ରକାର ଆୟୋଜନ କରିବାକୁ ଲାଗିଲେ । ମହାତ୍ମା ଗାନ୍ଧୀ ମଧ୍ୟ ଏହି ବିଦ୍ରୋହ ସମ୍ବନ୍ଧରେ ସରକାରଙ୍କ ପ୍ରତି ଭାରତବାସି-ମାନଙ୍କର ଯାହା କର୍ତ୍ତବ୍ୟ, ତାହା ପାଳନ କରିବାରେ ତ୍ରୁଟି କରି ନ ଥିଲେ । ସେ ପୁନର୍ବାର ଗୋଟିଏ ସ୍ୱେଚ୍ଛାସେବକ ସଂଘ ଗଠନ କରି ସରକାରଙ୍କୁ ଅନେକ ପ୍ରକାରରେ ସାହାଯ୍ୟ କଲେ । ତାହାଙ୍କର ଏହି କାର୍ଯ୍ୟରେ ମଧ୍ୟ ବଡ଼ ବଡ଼ କର୍ତ୍ତାମାନେ ଅତ୍ୟନ୍ତ ଅନୁକୂଳ ମତ ବ୍ୟକ୍ତ କରିଥିଲେ । ସର୍ବତ୍ର ପୁଣି ଭାରତବାସିମାନଙ୍କର ପ୍ରଶଂସା ହୋଇଥିଲା; କିନ୍ତୁ ଏହି ପ୍ରଶଂସାରେ ଲାଭ କଣ ? ତାହା ପୁଣି କ୍ଷଣସ୍ଥାୟୀ । ସେ ଯାହାହେଉ, ଜୁଲୁ ବିଦ୍ରୋହ ଶାନ୍ତ ହେଲା । ଭାରତବାସିମାନେ ତ ମହାତ୍ମା ଗାନ୍ଧୀଙ୍କର ପରିଚାଳନାରେ ସେମାନଙ୍କର କର୍ତ୍ତବ୍ୟ କଲେ, ସେଥିପାଇଁ ସେମାନଙ୍କର ପୁରସ୍କାର କଣ ମିଳିଲା ।? ପାଠକ-ମାନେ ଟିକିଏ ଅପେକ୍ଷା କଲେ ଦେଖି ପାରିବେ ।

ସେହି ବର୍ଷ ଅର୍ଥାତ୍ ୧୯୦୬ ଖ୍ରୀଷ୍ଟାବ୍ଦରେ ଟ୍ରାନ୍ସଭାଲର ନୂତନ ଶାସକମାନେ ଏସିଆବାସିମାନଙ୍କୁ ଗୋଟିଏ ନୂତନ ଆଇନର ଫାଶରେ ବାନ୍ଧିବାକୁ ଚେଷ୍ଟା କଲେ । ଏହି ଆଇନ ଜାରି ହୋଇ ଗଲେ ଭାରତବାସିମାନଙ୍କୁ କେବଳ ଯେ ଅପମାନିତ ହେବାକୁ ପଡ଼ିବ ତାହା ନୁହେ, ଏହା ଛଡ଼ା ଅନେକ ପ୍ରକାର କ୍ଷତିଗ୍ରସ୍ତ ମଧ୍ୟ ହେବାକୁ ପଡ଼ିବ । ନୂତନ ଆଇନଟିର ମର୍ମ ଏହି ଯେ, ପ୍ରତ୍ୟେକ ଏସିଆବାସିକୁ ସରକାରଙ୍କର ଖାତାରେ ଦସ୍ତଖତ କରିବାକୁ ହେବ । ପ୍ରତ୍ୟେକଙ୍କୁ ନିଜର ନାମ ରେଜିଷ୍ଟରି କରିବାକୁ ହେବ । ତାହା ସଙ୍ଗେ ସଙ୍ଗେ ନିଜର ଟିପଚିହ୍ନ ଦେବାକୁ ପଡ଼ିବ । ଧନୀ, ଦରିଦ୍ର, ମୂର୍ଖ, ସାହୁକାର,

ଶିକ୍ଷିତ, ଅଶିକ୍ଷିତ, ସ୍ତ୍ରୀ, ପୁରୁଷ ପ୍ରଭୃତି କେହି ଏଥିରୁ ଛାଡ଼ ପାଇବେ ନାହିଁ । ପାଠକମାନେ ଟିକିଏ ଭାବି ଦେଖନ୍ତୁ । ଟିପଚିହ୍ନ ସାଧାରଣତଃ କାହାକୁ ଦେବାକୁ ପଡ଼େ ? ଚୋର, ବଦମାସ ଲୋକ ସାଧାରଣତଃ ଟିପଚିହ୍ନ ଦେଇଥାନ୍ତି । ଦକ୍ଷିଣ ଆଫ୍ରିକାରେ ଏପରି ଗୋଟିଏ ନିୟମ ଜାରି କରିବାର ଉଦ୍ଦେଶ୍ୟ ଯାହା ଥାଉ, ସେ ବିଷୟରେ କିଛି ନ କହି ଏହି ନିୟମଟିକୁ ମାନି ନେଇ ନିଜକୁ ଅପମାନିତ କରାଇବା, ଚୋର ବଦମାସ ପରି ଯାଇ ସମସ୍ତଙ୍କ ଆଗରେ ନିଜର ଟିପଚିହ୍ନ ଦେଇ ଆସିବା, ଏହାଠାରୁ ବଳି ଲଜ୍ଜାର ବିଷୟ ଆଉ କଣ ହୋଇ ପାରେ ଏହି ଅପମାନ ମହାତ୍ମା ଗାନ୍ଧୀଙ୍କର ଅସହ୍ୟ ହୋଇ ଉଠିଲା । ସେ ଭାବିଲେ, ଏହି ନିୟମ ଏଠାରେ କେବଳ କେତେ ଲକ୍ଷ ଭାରତବାସିଙ୍କର ମାନ ନଷ୍ଟ କରୁଅଛି ତାହା ନୁହେ, ସମସ୍ତ ଭାରତର ମାନ ଏଥିରେ ନଷ୍ଟ ହେଉଅଛି । ସୁତରାଂ ଭାରତମାତାଙ୍କର ସମ୍ମାନ ରକ୍ଷା କରିବା-ପାଇଁ ସେ ଦୃଢ଼ସଙ୍କଳ୍ପ ହେଲେ । କାର୍ଯ୍ୟଂ ବା ସାଧୟେତ୍ ଶରୀରଂ ବା ପାତୟେତ୍ । ଏହି ବାକ୍ୟଟି ତାହାଙ୍କର ସଂକଳ୍ପର ମନ୍ତ୍ର ହେଲା । ଏହିପରି ଦାସତ୍ୱରୁ ଭାରତବାସିମାନଙ୍କୁ ମୁକ୍ତ କରିବାକୁ ହେଲେ ଯଦି ପ୍ରାଣ ପର୍ଯ୍ୟନ୍ତ ବଳି ଦେବାକୁ ପଡ଼େ, ମହାତ୍ମା ଗାନ୍ଧୀ ତାହା କରିବାକୁ ପଣ କଲେ । ଯଥାସମୟରେ ଏହାର ଘୋର ପ୍ରତିବାଦ ଆରମ୍ଭ କରିବାକୁ ଅଗ୍ରସର ହେଲେ ।

ମହାତ୍ମା ଗାନ୍ଧୀ ସେତେବେଳେ ଜୁଲୁବିଦ୍ରୋହ ସ୍ଥାନରେ ଥାନ୍ତି । ହଠାତ୍ ସେ ସ୍ଥାନ ପରିତ୍ୟାଗ କରି ଜୋହାନ୍ସବର୍ଗ ଚାଲି ଆସିଲେ । ସେଠାକୁ ନେଟାଲବାସୀ ମୁଖିଆ ମୁଖିଆ ଭାରତବାସିମାନଙ୍କୁ ଡକାଇ ସେମାନଙ୍କୁ ଆଇନଟିର ସମସ୍ତ ମର୍ମ ବୁଝାଇ ଦେଇଥିଲେ । ତାହା ପରେ ଏହି ଆଇନର କର୍ତ୍ତାମାନଙ୍କ ସହ ଦେଖା କରିବାକୁ ଗଲେ । ଗୋଟିଏ ବଡ଼ ସଭା କରି ଏହାର ପ୍ରତିବାଦ କଲେ । ସରକାର ଦେଖିଲେ ଯେ, ଆଇନଟିକୁ ନିର୍ବିଘ୍ନରେ ଜାରି କରି ନେଇ ପାରିବେ ନାହିଁ । ସୁତରାଂ ତହିଁରେ ଟିକିଏ ପରିବର୍ତ୍ତନ କରିବାକୁ

ଦେଲେ । ସ୍ତ୍ରୀମାନେ ଅଉ ନାମ ରେଜେଷ୍ଟ୍ରୀ କରି ଟେପଚିହ୍ନ ଦେବେ ନାହିଁ । କେବଳ ଏତିକି ପରିବର୍ତ୍ତନ ହେଲା । ମହାତ୍ମା ଗାନ୍ଧୀ ଦେଖିଲେ ଯେ, ସ୍ତ୍ରୀଜାତି ରକ୍ଷା ପାଇଲେ ସତ୍ୟ, କିନ୍ତୁ ସମସ୍ତ ଭାରତର ଅପମାନ ଏହାଦ୍ୱାରା ଦୂର ହେଲା ନାହିଁ । ଏଣୁ ସେ ପୁନର୍ବାର ଏହାର ତୀବ୍ର ପ୍ରତିବାଦ କରିବାକୁ ଲାଗିଲେ । ସମସ୍ତ ଦେଶରେ ତୁମୁଳ ଆନ୍ଦୋଳନ ଚାଲିଲା । କିନ୍ତୁ କର୍ତ୍ତାମାନେ ଏହି ଆନ୍ଦୋଳନରେ ବିଚଳିତ ହୋଇଥିଲେ ମଧ୍ୟ ତାହା ପ୍ରତି ଭ୍ରୂକ୍ଷେପ ନ କରି ଅବିଳମ୍ବେ ଆଇନଟିକୁ ପାସ କରି ଦେଲେ । ଏପରିଭାବରେ ଆଇନଟିକୁ ପାସ କରାଇ ନେବାର ଉଦ୍ଦେଶ୍ୟ ହେଉଅଛି, ଭାରତବାସୀମାନେ ସର୍ବଦା ସେମାନଙ୍କର ଚକ୍ଷୁର ଶୂଳ, ସୁତରାଂ କୌଣସି ପ୍ରକାରେ ବ୍ୟତିବ୍ୟସ୍ତ ହୋଇ ଯଦି ଏହି ଦେଶ ଛାଡ଼ି ଚଳାନ୍ତି, ତାହାହେଲେ ସେମାନଙ୍କର ପରମ ଆନନ୍ଦ ।

ଏହି ଆଇନଟି ପାସ ହେବା ଆଗରୁ ମହାତ୍ମା ଗାନ୍ଧୀ ସମସ୍ତ ଭାରତବାସୀଙ୍କୁ ଏକ ମହାମନ୍ତ୍ରରେ ଦୀକ୍ଷିତ କରାଇ ପାରିଥିଲେ । ସେମାନେ ସମସ୍ତେ ଏକତ୍ର ହୋଇ ସଂକଳ୍ପ କରିଥିଲେ ଯେ, ଯଦି ସରକାର ଏହି ଆଇନଟିକୁ ଉଠାଇ ନ ନିଅନ୍ତି, ସେମାନଙ୍କର ସହସ୍ରପ୍ରକାର ଆବେଦନ ନିବେଦନ ବୃଥା ହୁଏ, ତାହାହେଲେ କଦାପି ସେମାନେ ଏହି ଅପମାନକୁ ନୀରବରେ ସହ୍ୟ କରି ପାରିବେ ନାହିଁ । ଏଥିପାଇଁ ଯଦି ଜୀବନକୁ ବଳି ଦେବାକୁ ପଡ଼େ, ତାହାହେଲେ ତାହା କରିବାକୁ ସେମାନେ ପଶ୍ଚାତ୍ପଦ ହେବେ ନାହିଁ । ବର୍ତ୍ତମାନ ଆଇନଟି ତ ପାସ ହୋଇଗଲା । ସୁତରାଂ ସେମାନଙ୍କର ସଂକଳ୍ପର ପରୀକ୍ଷା ସମୟ ଆସି ଉପସ୍ଥିତ । ମହାତ୍ମା ଗାନ୍ଧୀଙ୍କର ଶିକ୍ଷା ଓ ଦୀକ୍ଷାରେ ଦକ୍ଷିଣଆଫ୍ରିକାର ଭାରତବାସୀମାନେ ଜାଗ୍ରତ ହୋଇ ଉଠିଲେ । ସେମାନେ ମରିବାକୁ ପ୍ରସ୍ତୁତ, କିନ୍ତୁ ଜାତୀୟ ଅପମାନ ସହ୍ୟ କରିବାକୁ ପ୍ରସ୍ତୁତ ନୁହନ୍ତି । ବର୍ତ୍ତମାନ କଣ କଲେ ଏବଂ କି ଉପାୟ ଅବଲମ୍ବନ କଲେ ସେମାନେ ନିଜର, ତଥା ଜାତିର ସମ୍ମାନ ରକ୍ଷା କରି ପାରିବେ । ବହୁଦିନ ହେଲା ସେମାନେ

ବଡ଼ ନିର୍ଯାତନ ସହ୍ୟ କରି ଆସୁଅଛନ୍ତି । ବହୁ ଅପମାନ ସହ୍ୟ କରିଅଛନ୍ତି । କିନ୍ତୁ ବର୍ତ୍ତମାନ ଏହି ଅପମାନ ସହ୍ୟ କରିବା ଅସମ୍ଭବ । ଗାନ୍ଧୀ ଦେଖିଲେ ଯେ, ଆଉ ଆବେଦନ ନିବେଦନଦ୍ୱାରା କିଛି ହେବ ନାହିଁ । ବର୍ତ୍ତମାନ ସଂଗ୍ରାମ ଆବଶ୍ୟକ । କିନ୍ତୁ ଏହି ସଂଗ୍ରାମ ବା ଲଢ଼ାଇ କିଣ ? ତାହା କିପରି ଚଳାଇବାକୁ ହେବ ? । ଗାନ୍ଧୀଙ୍କର ପ୍ରାଣ ମହାନ୍ । ତାହାଙ୍କର ଚିତ୍ତ ବଡ଼ ଉଦାର । ଅହିଂସା ତାହାଙ୍କର ଜୀବନର ପରମ ବ୍ରତ । କାହାର ଅନିଷ୍ଟ ଚିନ୍ତା କରିବା ତାହାଙ୍କର ସ୍ୱଭାବ ନୁହେ । ଦ୍ୱେଷ, ହିଂସା ଧରି ପରକୁ ଅନିଷ୍ଟ କରି ନିଜର ଉଦ୍ଦେଶ୍ୟ ସାଧନ କରିବା ତାହାଙ୍କ ମତରେ ଅବିରୋଧୀ ତାହା ହୋଇଥିଲେ ଆଜି ସେ "ମହାତ୍ମା ଗାନ୍ଧୀ" ବୋଲି ପରିଚିତ ହୋଇ ନ ଥାନ୍ତେ ।

ସେ ଯାହାହେଉ, ଏହି ସମୟରେ ଅନେକେ ଅନେକପ୍ରକାର ବାଟ ଦେଖାଇଥିଲେ । କିନ୍ତୁ ଗାନ୍ଧୀ ସେସବୁ ଧୀର ଓ ସ୍ଥିରଭାବରେ ବିଚାର କରି ଶେଷରେ ଠିକ କଲେ ଯେ, ଏହି ଯେ ଅନ୍ୟାୟ ଅତ୍ୟାଚାର ଚାଲିଅଛି, ସେଥି ସକାଶେ ଅନ୍ୟାୟୀ ଓ ଅତ୍ୟାଚାରମାନଙ୍କର କ୍ଷତି କରି ଆମ୍ଭର ମାନ ରକ୍ଷା କରିବା ଆମ୍ଭର କର୍ତ୍ତବ୍ୟ ନୁହେ । ସେମାନେ ଆମ୍ଭମାନଙ୍କୁ ଏହି ଅପମାନ ସହ୍ୟ କରିବାକୁ କହୁ ନାହାନ୍ତି । ସେମାନେ ଗୋଟିଏ ନିୟମ ବାନ୍ଧି ଦେଇ-ଅଛନ୍ତି । ଏହା ଯେ ପାଳନ ନ କରିବ, ତାହାକୁ ଦଣ୍ଡ ଭୋଗ କରିବାକୁ ହେବ ; ସୁତରାଂ ଭାରତବାସିମାନେ ଇଚ୍ଛା କଲେ ଅକ୍ଳେଶରେ ସେମାନଙ୍କର ମାନ ମର୍ଯ୍ୟାଦା ରଖି ପାରନ୍ତି । ସେମାନଙ୍କର ମାନ ବିକିବାକୁ ସେମାନଙ୍କୁ କେହି କହୁ ନାହିଁ । ନିଜର ମାନ ନିଜେ ରଖି ପାରିଲେ କାହାର କ୍ଷମତା ଅଛି ଯେ ସେ ତାହା ହରଣ କରି ପାରିବ । "ଅତଏବ ଭାରତବାସିମାନେ ଏହି ନିୟମ ଲଙ୍ଘନ କରି ନିଜର ମାନ ରକ୍ଷା କରିବାକୁ ପ୍ରସ୍ତୁତ ହୁଅନ୍ତୁ । ସେଥି ସକାଶେ ଯାହା ଦଣ୍ଡ ମିଳିବ, ତାହା ଭୋଗ କରନ୍ତୁ ।" ସେ ଏହି ପ୍ରସ୍ତାବ ସମସ୍ତଙ୍କ ସମକ୍ଷରେ ଆଗତ କଲେ । କଣ କରିବାକୁ ହେବ, ଆଜିଯାଏ କେହି ଠିକ

କର ପାରୁ ନ ଥିଲେ । ସମସ୍ତଙ୍କର ବୁଦ୍ଧି ହଜ ଯାଇଥିଲା; କିନ୍ତୁ ଏହି ପ୍ରସ୍ତାବଟି ଶୁଣିଲା ମାତ୍ରକେ ସମସ୍ତେ ସତେଜ ହୋଇ ଉଠିଲେ । ଅତ୍ୟନ୍ତ ଉତ୍ସାହର ସହିତ ଏହାକୁ ସମର୍ଥନ କଲେ । ସଭାରେ ସ୍ଥିର ହେଲା ଯେ, କେହି ନାମ ରେଜେଷ୍ଟ୍ରୀ କରାଇବେ ନାହିଁ କିମ୍ବା ଟିପଚିହ୍ନ ଦେବେ ନାହିଁ । ଦେଖାଯାଉ ସରକାର କଣ କରିବେ ।

ଏଣେ ନୂତନ ଆଇନ ଅନୁସାରେ ରାଜକର୍ମଚାରୀମାନେ ଭାରତ-ବାସିଙ୍କର ନାମ ତାଲିକାଭୁକ୍ତ କରିବା ସକାଶେ ସ୍ଥାନେ ସ୍ଥାନେ ବୁଲିବାକୁ ଆରମ୍ଭ କଲେ । କିନ୍ତୁ ସେମାନେ ନାମ ରେଜେଷ୍ଟ୍ରୀ କରିବାକୁ ଅସମ୍ମତ । ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ ସମସ୍ତେ ଏକସ୍ୱରରେ କହିବାକୁ ଲାଗିଲେ, "ତୁମ୍ଭେ ଯାହା କରି ପାରିବ କର, କିନ୍ତୁ ଆମ୍ଭେ ନାମ ରେଜେଷ୍ଟ୍ରୀ କରିବୁ ନାହିଁ କିମ୍ବା ଟିପଚିହ୍ନ ଦେବୁ ନାହିଁ ।" ସରକାର ଦେଖିଲେ ଯେ, ତାଙ୍କର ନିୟମକୁ କେହି ମାନୁ ନାହାନ୍ତି, କଣ କରିବେ ଆଉ ଉପାୟ ନାହିଁ । ଦୁର୍ବଳ ନ ପାରିଲେ କଣ କରେ, ରାଗରେ ଫୁଲାଏ କାମୁଡ଼ି ଦିଏ ସିନା । ସେହିପରି ଆଜ ମହାତ୍ମା ଗାନ୍ଧୀଙ୍କର ବ୍ରହ୍ମଅସ୍ତ୍ର ସରକାରକୁ ଦୁର୍ବଳ କରି ପକାଇଅଛି । ସେମାନେ ଭାରତବାସିମାନଙ୍କୁ ବାନ୍ଧି ଜେଲକୁ ପଠାଇ ଦେଲେ, ଦଳ ଦଳ ହୋଇ ଲୋକେ ଜେଲକୁ ଚାଲିଗଲେ । ଜେଲ ଯିବା ସେମାନଙ୍କ ଜୀବନର ଗୋଟିଏ ସୌଭାଗ୍ୟ ବିଷୟ ହୋଇ ପଡ଼ିଲା । ତହିଁ ପ୍ରତି କାହାର ଚିନ୍ତା ନାହିଁ । ପତଙ୍ଗ ଯେପରି ଆନନ୍ଦରେ ଆଲୋକ ନିକଟକୁ ଦୌଡ଼ି ଆସେ, ଭାରତବାସୀ ସେହିପରି ଅବସ୍ଥାନବିଶେଷରେ ଜେଲ ଯିବାକୁ ଅତ୍ୟନ୍ତ ଆନନ୍ଦ ଓ ଉତ୍ସାହ ସହିତ ଦୌଡ଼ିବାକୁ ଆରମ୍ଭ କଲେ । ଜେଲଖାନା ତୀର୍ଥସ୍ଥଳ ବୋଲି ବିବେଚିତ ହେଲା । ଅବଶେଷରେ ମହାତ୍ମା ଗାନ୍ଧୀଙ୍କର ପାଳି ପଡ଼ିଲା । ସେ ବନ୍ଦୀ ହୋଇ ଗଲେ । ତାଙ୍କର ବିଚାର ହେଲାବେଳେ ସେ କହିଲେ, "ବର୍ତ୍ତମାନ ଯେ ବ୍ୟାପାର ଚାଲିଅଛି, ସେଥିପାଇଁ ମୁଁ ନିଜେ ଦାୟୀ । ଭାରତବାସି-ମାନଙ୍କୁ ଏପରି ନିୟମ ଭଙ୍ଗ କରିବା ସକାଶେ ମୁଁ ମତାଇଅଛି ! ସେମାନେ

ମୋଦ୍ୱାରା ଚଳିତ ହୋଇ ଏପରି କାର୍ଯ୍ୟ କରିଅଛନ୍ତି । ସୁତରାଂ ରାଜଧର୍ମ ଅନୁସାରେ ମୁଁ ସର୍ବାପେକ୍ଷା ବେଶି ଦୋଷୀ । ଲୋକମାନଙ୍କୁ ବିଶେଷ କିଛି ଶାସ୍ତି ନ ଦେଇ ମୋତେ ଉପଯୁକ୍ତ ଶାସ୍ତି ଦିଆଯାଉ ।” ବିସ୍ମୃମ ଭଙ୍ଗ କଲେ. ଆଇନ ଅନୁସାରେ ୬ ମାସ କାରାଦଣ୍ଡ ପାଇବାର କଥା । ଅନେକେ ମଧ୍ୟ ଆଗରୁ ଏହି ଦଣ୍ଡ ପାଇ ଚାଲେଣି । କିନ୍ତୁ ଏଠାରେ ମହାତ୍ମା ଗାନ୍ଧୀଙ୍କୁ ଦୁଇମାସ ଦଣ୍ଡ ମିଳିଥିଲା ।

କର୍ତ୍ତାମାନେ ଭାବିଥିଲେ ଯେ, ଦୁଇ ଚାରିଜଣଙ୍କୁ ଧରି ଜେଲରେ ପକାଇଦେଲେ ସମସ୍ତେ ଥଣ୍ଡା ହୋଇଯିବେ । କିନ୍ତୁ ସେମାନଙ୍କର ସେ ଭ୍ରମ ଶୀଘ୍ର ଦୂର ହେଲା । ମହାତ୍ମା ଗାନ୍ଧୀ ଜେଲ ଯିବା ପରେ ଏହି ଆନ୍ଦୋଳନ ପ୍ରବଳ ଆକାର ଧାରଣ କରି ଚାରିଆଡ଼େ ବ୍ୟାପିଗଲା । ଦଳ ଦଳ ହୋଇ ଭାରତବାସିମାନେ ଆନନ୍ଦରେ ଜେଲ ଗଲେ । ମହା ଗୋଳମାଳ ଉପସ୍ଥିତ । ସରକାର ଏଣିକି କଣ କରିବେ, କିଛି ବୁଦ୍ଧି ଦିଶିଲା ନାହିଁ । କୌଣସିପ୍ରକାରେ ଏଥିରୁ ହାତ ଖସାଇବାକୁ ଚେଷ୍ଟା କଲେ । ସମ୍ବାଦପତ୍ରଦ୍ୱାରା ଭାରତବାସିମାନଙ୍କୁ ଜଣାଇ ଦିଆଗଲା ଯେ, ଏଖଣି ୩ ମାସ ପର୍ଯ୍ୟନ୍ତ ଉକ୍ତ ଆଇନଟି ଆଉ ପ୍ରଚଳିତ ହେବ ନାହିଁ । ଏଣେ ଜେନେରଲ ସ୍ମଟ୍ସ ସାହେବ ସରକାର ତରଫରୁ ଦୂତ୍‌ଲୋକ ହୋଇ ଗାନ୍ଧୀଙ୍କ ସହ ଜେଲଖାନାରେ ଦେଖା କଲେ । ତାହାଙ୍କୁ ଉକ୍ତ ୩ ମାସ କଥା ଜଣାଇ କହିଲେ ଯେ, ଏହି ତିନମାସ ମଧ୍ୟରେ ଭାରତବାସିମାନେ ଯଦି ଇଚ୍ଛାନୁସାରେ ସେମାନଙ୍କର ନାମ କେବଳ ରେଜିଷ୍ଟରୀ କରି ଦିଅନ୍ତି, ତାହାହେଲେ ଏହି ଆଇନଟିକୁ ସରକାର ଉଠାଇ ନେବେ । ମହାତ୍ମା ଗାନ୍ଧୀ ବଡ଼ ସରଳପ୍ରକୃତିର ଲୋକ । କେହି ଅବିଶ୍ୱାସର କାର୍ଯ୍ୟ ନ ଦେଖାଇବା-ପର୍ଯ୍ୟନ୍ତ ସେ କାହାରିକୁ ଅବିଶ୍ୱାସ କରନ୍ତି ନାହିଁ । ଏପରି ସ୍ଥଳେ ଜେନେରଲ ସ୍ମଟ୍ସଙ୍କ ପରି ଜଣେକି ଉଚ୍ଚପଦସ୍ଥ ବ୍ୟକ୍ତିଙ୍କୁ ସେ କିପରି ଅବିଶ୍ୱାସ କରିବେ ? ସୁତରାଂ ସେ ତାହାଙ୍କ କଥାରେ ପ୍ରତିଶ୍ରୁତ ହୋଇ ସେହିପରି କାର୍ଯ୍ୟ କରିବାକୁ ସମ୍ମତ ହେଲେ ।

ଗୋଟିଏ ଘୋଷଣା ଦ୍ୱାରା ପ୍ରଚାର କରି ଦିଆଗଲା ଯେ, ସରକାର ଏହି ନିୟମକୁ ରଦ୍ କରିଦେବାକୁ ପ୍ରସ୍ତୁତ । କିନ୍ତୁ ଭାରତବାସିମାନେ ଅଫିସକୁ ଯାଇ ଇଚ୍ଛାନୁସାରେ ନିଜ ନିଜ ନାମ ରେଜିଷ୍ଟରୀ କରିଦେଇ ଆସିବେ । ମହାତ୍ମା ଗାନ୍ଧୀଙ୍କର ଏହି ଘୋଷଣାରେ ଅନେକ ଭାରତବାସୀ ବହୁ ଆପତ୍ତି ଉତ୍ଥାପନ କରିଥିଲେ । ଅନେକେ ଭାବିଲେ, ଗାନ୍ଧୀ ଭୟରେ ଏପରି କରିବାକୁ ଯାଉଅଛନ୍ତି । ଗାନ୍ଧୀଙ୍କର ଉଦ୍ଦେଶ୍ୟ ଅନେକେ ବୁଝି ନ ପାରି ନାନା କଥା କହିବାକୁ ଆରମ୍ଭ କଲେ । କିନ୍ତୁ ଏ ସବୁ ପ୍ରତି ମହାତ୍ମା ଗାନ୍ଧୀ ମନ ନ ଦେଇ ନିଜେ ଯାହା ଠିକ କଲେ, ତଦନୁସାରେ କାର୍ଯ୍ୟ କରିବାକୁ ଅଗ୍ରସର ହେଲେ । ସେ ନିଶ୍ଚୟ କଲେ ଯେ, ସେ ଆଗ ଯାଇ ନିଜ ନାମ ରେଜିଷ୍ଟରୀ କରି ଆସିବେ । ତାହାଙ୍କର ଏପରି କାର୍ଯ୍ୟ ଦେଖି ଜଣେକ ମୁସଲମାନ ବ୍ୟକ୍ତି ମନେ କଲେ ଯେ, ଗାନ୍ଧୀ ନିଜ ଦେଶ ଓ ଜାତିର ମାନ ହରାଇବାକୁ ଯାଉଅଛନ୍ତି । ସେ ନିଶ୍ଚୟ କଲେ ଯେ, ଗାନ୍ଧୀଙ୍କୁ ତାହାଙ୍କର ବିଶ୍ୱାସଘାତକତା ସକାଶେ ପ୍ରତିଫଳ ଦେବାକୁ ହେବ । ଏ କିନ୍ତୁ ଗୋଟାଏ ନୂଆ କଥା ନୁହେ, ଜଗତରେ ମହାପୁରୁଷମାନଙ୍କ ଜୀବନରେ ଏପରି ଘଟନା ଅନେକ ସ୍ଥଳରେ ଦେଖାଯାଇଅଛି । ସାଧାରଣ ଲୋକେ ଅନେକ ସମୟରେ ସେମାନଙ୍କର ପ୍ରକୃତ ଉଦ୍ଦେଶ୍ୟ ବୁଝି ପାରନ୍ତି ନାହିଁ । ସେମାନେ ମହାତ୍ମାଙ୍କର କୌଣସି କୌଣସି କାର୍ଯ୍ୟ ଦେଖି ମନେ କରନ୍ତି ଯେ, ସେ ଲୋକଙ୍କର ଅନିଷ୍ଟ ସାଧନ କରିବାକୁ ଉଦ୍ୟତ ଅଛନ୍ତି । ଆଜ "ମହାତ୍ମା ଗାନ୍ଧୀ"ଙ୍କ ଜୀବନରେ ଏହିପରି ଗୋଟିଏ ଘଟନା ଆସି ଉପସ୍ଥିତ । କେହି କେହି ତାହାଙ୍କୁ ଦେଶ-ଦ୍ରୋହୀ ବୋଲି ଭର୍ତ୍ସନା କରିଥିଲେ । କେହି କେହି ମଧ୍ୟ ପ୍ରହାର କରିବାକୁ ଭୟ ଦେଖାଇଥିଲେ । କିନ୍ତୁ ଗାନ୍ଧୀ ଯାହା ଥରେ କର୍ତ୍ତବ୍ୟ ବୋଲି ମନେ କରନ୍ତି, ତାହା ସେ କଦାପି ଛାଡ଼ନ୍ତି ନାହିଁ । ଆଜ ସେହି କଥା ଘଟିଅଛି । ସେ ସ୍ଥିର କଲେ ଯେ, ଆଗ ହୋଇ ଯାଇ ନାମଟି ରେଜିଷ୍ଟରୀ କରିଦେବେ । ପରଦିନ ଅଫିସକୁ ବାହାରିଲେ । ଯେଉଁ ମୁସଲମାନ ବ୍ୟକ୍ତିଟି ତାହାଙ୍କୁ ନାନାପ୍ରକାର

ଭୟ ଦେଖାଇଥିଲେ, ସେ ବାଟରେ ଆଜ ଗାନ୍ଧୀଙ୍କର ପ୍ରାଣ ଶେଷ କରିଦେବା ପାଇଁ ଜଗି ରହିଥିଅଛନ୍ତି । ସତକୁ ସତ ତାହାହିଁ ହେଲା କହିଲେ ଚଳେ । ଗାନ୍ଧୀ ଯାଉଥିବା ସମୟରେ ଉକ୍ତ ମୁସଲମାନଟି ଆଉ ଦୁଇଜଣଙ୍କ ସହିତ ଗାନ୍ଧୀଙ୍କୁ ଭୟଙ୍କର ପ୍ରହାର କଲେ । ଗାନ୍ଧୀଙ୍କର ମୁଣ୍ଡ ଫାଟିଗଲା, ସେ ଅଚେତ ହୋଇ ତଳେ ପଡ଼ିଗଲେ, ଏପରି ସମୟରେ ଲୋକେ ଆସି ଜମା ହୋଇଯିବାରୁ ଉକ୍ତ ପ୍ରହାରକମାନେ ଖସି ପଳାଇ ଯାଇଥିଲେ । ଲୋକେ ସେଠାରୁ ଗାନ୍ଧୀଙ୍କୁ ଉଠାଇ ତାହାଙ୍କର ଜଣେ ଇଂରେଜ ବନ୍ଧୁଙ୍କ ପାଖକୁ ନେଇଗଲେ । ସେ ଇଂରେଜ ବ୍ୟକ୍ତିଟି ଜଣେ ଧର୍ମଯାଜକ, ତାହାଙ୍କର ନାମ ଜେ. ଜେ. ଡୋକ୍ । ସେ ଓ ତାହାଙ୍କର ପତ୍ନୀ ଗାନ୍ଧୀଙ୍କର ବହୁତ ସେବା କରିଥିଲେ । ଗାନ୍ଧୀ ଅନେକ ସମୟରେ କହନ୍ତି ଯେ, ସେ ଏହି ଡୋକ୍ ସାହେବଙ୍କ ପତ୍ନୀ-ଯୋଗୁଁ ବଞ୍ଚି ଯାଇଥିଲେ । ସେ ଯାହା ହେଉ ଗାନ୍ଧୀଙ୍କୁ ସେଠାରୁ ଉଠାଇ ନେଇଗଲେ ଏବଂ ତାହାଙ୍କର ଚେତନା ହେବାମାତ୍ରେ ସେ କହିଥିଲେ, "ମୁଁ ଆଗ ଯାଇ ରେଜେଷ୍ଟ୍ରି ଅଫିସରେ ନାମ ରେଜେଷ୍ଟ୍ରି ନ କଲେ ଜଳସ୍ପର୍ଶ କରିବି ନାହିଁ" । ଏପରି ବିପନ୍ନ ଅବସ୍ଥାରେ ବିଛଣା ତ୍ୟାଗ ନ କରିବାକୁ ବନ୍ଧୁ ଅନୁରୋଧ କଲେ ସୁଦ୍ଧା ଗାନ୍ଧୀ ସେ କଥା ଶୁଣିଲେ ନାହିଁ । ରେଜେଷ୍ଟ୍ରି ଅଫିସକୁ ଯାଇ ନାମ ରେଜେଷ୍ଟ୍ରି କରି ଆସିଲେ । ଏଣେ ପୁଲିସ ଆସି ଉପସ୍ଥିତ ହେଲା, ତାହାଙ୍କୁ ଯେ ମାରିଅଛି, ତାର ନାମ ପଚାରି ଲେଖିନେବ ଏବଂ ଭାରତବାସିମାନେ ମଧ୍ୟ ଗାନ୍ଧୀଙ୍କୁ ପ୍ରହାର କରିଥିବା ବ୍ୟକ୍ତିକୁ ଶାସ୍ତି ଦେବାକୁ ଦୃଢ଼ ସଂକଳ୍ପ କରିଅଛନ୍ତି । ଏ ସବୁ ଦେଖି ଗାନ୍ଧୀ ସମସ୍ତଙ୍କୁ ଏହି କାର୍ଯ୍ୟରୁ ବିରତ ହେବାପାଇଁ ଆଦେଶ ଦେଲେ । ତାହା ପରେ ଗୋଟିଏ ଘୋଷଣାପତ୍ର ପ୍ରଚାର କରିଦେଲେ । ଘୋଷଣାପତ୍ରଟି ଏହି "ଯେଉଁମାନେ ମୋତେ ମାରିଅଛନ୍ତି, ସେମାନେ ଜାଣନ୍ତି ନାହିଁ, ମୋତେ କାହିଁକି ମାରିଲେ । ସେମାନଙ୍କର ବିଶ୍ୱାସ, ମୁଁ ଗୋଟିଏ ବଡ଼ ଅନ୍ୟାୟ କାର୍ଯ୍ୟ କରିବାକୁ ଯାଉଅଛି । ସେହି ଅନ୍ୟାୟ କାର୍ଯ୍ୟ ସକାଶେ ମୋତେ ଶାସ୍ତି ଦେବାକୁ ହେବ । ସେମାନେ

ଯାହା ଉଚିତ ମନେ କଲେ, ତାହା କରଅଛନ୍ତି । ତହିଁରେ ସେମାନଙ୍କର ଟିକିଲେ ମାତ୍ର ଦୋଷ ନାହିଁ । ସୁତରାଂ ମୋର ଅନୁରୋଧ ଏହି ଯେ, ସେମାନଙ୍କ ବିରୁଦ୍ଧରେ ଯେପରି କୌଣସି ମାମଲା ନ ଚଳେ । ମୁସଲମାନ ଜଣେ ମୋର ଦେହରେ ହାତ ଲଗାଇଅଛି, ଏହା ଭାବି ହିନ୍ଦୁମାନେ ବିଶେଷ କ୍ରୋଧ କରି ଯାଉନ୍ତି । କିନ୍ତୁ ଏପରି କ୍ରୋଧ କରିବା ସେମାନଙ୍କର ଉଚିତ ନୁହେ । ଯଦି କେହି କୌଣସି ପ୍ରକାର କ୍ରୋଧ ବା ଦ୍ୱେଷର ଭାବ ପୋଷଣ କରେ, ତେବେ ସେ ଭଗବାନଙ୍କ ନିକଟରେ ଦାୟୀ ହେବ । ମୋର ଦେହରୁ ଆଜ ଯେ ରକ୍ତପାତ ହୋଇଅଛି, ତାହା ହିନ୍ଦୁ ମୁସଲମାନଙ୍କର ଏକତାକୁ ଦୃଢ଼ କରୁ । ଈଶ୍ୱରଙ୍କ ନିକଟରେ ମୋର ଏହି ପ୍ରାର୍ଥନା । ସମସ୍ତେ ଏହା ଭୁଲି ବର୍ତ୍ତମାନ କର୍ତ୍ତବ୍ୟରେ ଲାଗିଯାନ୍ତୁ । ବର୍ତ୍ତମାନ ସେମାନେ ନିଜ ନିଜ ଇଚ୍ଛା ଅନୁସାରେ ନାମ ରେଜଷ୍ଟରୀ କରନ୍ତୁ, ତାହା ହେଲେ ସରକାର ନୂତନ ଆଇନ ଉଠାଇ ଦେବେ । ସରକାର ଏହି ଆଶା ଦେଇଅଛନ୍ତି, ସୁତରାଂ ଭାରତବାସିମାନେ ସରକାରଙ୍କର ଏହି କଥା ଶୁଣିଲେ ଆମ୍ଭମାନଙ୍କର ମଙ୍ଗଳ ହେବ, ଏହା ମୋର ବିଶ୍ୱାସ ।” ଗାନ୍ଧୀଙ୍କର ଏହି କଥାରେ ସମସ୍ତେ ବିସ୍ମିତ ହୋଇ ଯାଇଥିଲେ ।

ଏଣେ ମହାତ୍ମା ଗାନ୍ଧୀଙ୍କର ଅବସ୍ଥା ବଡ଼ ଶୋଚନୀୟ । ସେ ଅନେକ ଦିନ ପର୍ଯ୍ୟନ୍ତ ବିଛଣାରୁ ଉଠି ପାରିଲେ ନାହିଁ । ଅନେକଙ୍କ ମନରେ ଆଶଙ୍କା ଉପସ୍ଥିତ ହେଲା । ଗାନ୍ଧୀ ମଧ୍ୟ ନିଜେ ଅନେକ ଥର କହିଅଛନ୍ତି ଯେ, ସେ ଏହି ସମୟରେ ମରଣାପନ୍ନ ହୋଇ ଯାଇଥିଲେ । କେବଳ ଡୋକ୍ ସାହେବଙ୍କ ପତ୍ନୀଙ୍କ ସେବା ଶୁଶ୍ରୂଷା ତାହାଙ୍କୁ ବଞ୍ଚାଇଥିଲା । ଉକ୍ତ ସହୃଦୟା ଇଂରାଜମହିଳା ମଧ୍ୟ ଆହାର ନିଦ୍ରା ଭୁଲି ଗାନ୍ଧୀଙ୍କର ପରିଚର୍ଯ୍ୟା କରିଥିଲେ । ବାସ୍ତବିକ ଏହାଙ୍କ ସଦୃଶ ଜଣେ ମହିଳା ନ ମିଳିଥିଲେ ତାଙ୍କ ପକ୍ଷରେ ଆରୋଗ୍ୟ ଲାଭ କରିବା ଅସମ୍ଭବ ହୋଇ ପଡିଥାନ୍ତା ।

ତାହାଙ୍କର ନିବେଦନ ଶୁଣି ଭାରତବାସିମାନଙ୍କ ମଧ୍ୟରେ ଗୋଟାଏ ଚହଳ ପଡ଼ିଗଲା । ଦଳ ଦଳ ହୋଇ ସମସ୍ତେ ନିଜ ନିଜ ଇଚ୍ଛା ଅନୁସାରେ

ନାମ ରେଜଷ୍ଟ୍ରି କରି ଆସିଲେ । ସରକାର ଯାହା କହିଥିଲେ, ସେ କଥା କାର୍ଯ୍ୟରେ ପରିଣତ ହେଲା । ବର୍ତ୍ତମାନ ସରକାରଙ୍କର ପରୀକ୍ଷାର ସମୟ । ତିନି ମାସ ଅସି ଅତୀତ ହେବାକୁ ବସିଲା । ନିୟମଟିକୁ ରଦ କରିବେ କି ନାହିଁ, ସରକାର ଆଉ ତାହାର ନାମ ଗନ୍ଧ ଧରିଲେ ନାହିଁ । ଜେନେରଲ ସ୍ମଟ ସାହେବ ଗାନ୍ଧୀଙ୍କୁ ଯେଉଁ ଜବାବ ଦେଇ ଯାଇଥିଲେ, ତାହା କାର୍ଯ୍ୟରେ ପରିଣତ କରିବା ସକାଶେ ଗାନ୍ଧୀ ବାରମ୍ବାର ଅନୁରୋଧ କଲେ । କିନ୍ତୁ ତାଙ୍କ କଥା ଆଉ ଶୁଣନ୍ତି କିଏ ! ଓଡ଼ିଆରେ ଗୋଟିଏ କଥା ଅଛି, "ଭାଇ ରେ, ନଇ ପାରି ହେଲେ କିଏ ରେ !" ଦକ୍ଷିଣ ଆଫ୍ରିକାରେ ଠିକ ସେହି କଥା ଘଟିଅଛି । ମହାତ୍ମା ଗାନ୍ଧୀ ବାରମ୍ବାର ଚେଷ୍ଟା କରି ଯେତେବେଳେ କୌଣସି ଫଳ ପାଇଲେ ନାହିଁ ଏବଂ ଦେଖିଲେ, ସତ୍ୟାଗ୍ରହ ବଡିତ ଅନ୍ୟ କିଛି ଉପାୟ ନାହିଁ, ଲୋକମାନଙ୍କୁ ପୁନର୍ବାର ସେହି ପନ୍ଥା ଅବଲମ୍ବନ କରିବାକୁ ଆହ୍ୱାନ କଲେ । ସରକାରଙ୍କର ଏପରି ବିଶ୍ୱାସଘାତକତାରେ ସମସ୍ତ ଭାରତବାସୀ ମାତି ଉଠିଲେ । ଏଥର ସତ୍ୟାଗ୍ରହ ସମର ଦ୍ୱିଗୁଣିତ ପ୍ରଭାବରେ ଚାଲିଲା । ଯେଉଁମାନେ ନାମ ରେଜଷ୍ଟ୍ରି କରି ସାର୍ଟିଫିକେଟ ପାଇଥିଲେ, ସେମାନଙ୍କୁ ଆଇନ ଅନୁସାରେ ସବୁ ଜାଗାରେ ସାର୍ଟିଫିକେଟ ଦେଖାଇବାକୁ ହେବ ଓ ଟିପଚିହ୍ନ ମଧ୍ୟ ଦେବାକୁ ପଡ଼ିବ । ଯେଉଁମାନେ ସତ୍ୟାଗ୍ରହ ଲଢ଼ାଇର ପଥ ଅନୁସରଣ କଲେ, ସେମାନେ ପ୍ରତିଜ୍ଞା କଲେ ଯେ, ଆଉ ଏ ସାର୍ଟିଫିକେଟ ଦେଖାଇବେ ନାହିଁ, କି ଟିପଚିହ୍ନ ଦେବେ ନାହିଁ । ଫଳରେ ପୁଣି ଧରାପକଡ଼ା ଆରମ୍ଭ ହେଲା । ଦଳ ଦଳ ହୋଇ ଭାରତବାସିମାନେ ଧରା ହୋଇ ଜେଲକୁ ଗଲେ । ଜାତୀୟ ମାନ ରକ୍ଷା କରିବା ସକାଶେ ପିତା ମାତା ପୁତ୍ର କନ୍ୟା ସ୍ତ୍ରୀ ଇତ୍ୟାଦି ସମସ୍ତଙ୍କୁ ଅସହାୟ ଅବସ୍ଥାରେ ପକାଇ ଏହି ଅବସ୍ଥାକୁ ସାଦରେ ଅଲିଙ୍ଗନ କରିବାକୁ ପଶ୍ଚାତ୍‌ପଦ ହେଲେ ନାହିଁ । ଲୋକ ଥରକୁ ଥର ଜେଲକୁ ଯାଉଛନ୍ତି, କୌଣସି ପ୍ରକାର ଡର ଭୟ ନାହିଁ । ଜେଲରୁ ଆସି ପୁଣି ଜେଲକୁ ଯିବାକୁ ପ୍ରସ୍ତୁତ ।

ଏଣେ ସରକାରୀ କର୍ମଚାରିମାନେ ଭାରତବାସିମାନଙ୍କୁ ପରାସ୍ତ କରିବାକୁ ନାନା ଉପାୟ ଅବଲମ୍ବନ କଲେ । ଜେଲରେ ନାନା ପ୍ରକାର କଠୋର

ନିୟମମାନ ଜାରି ହେଲା ଖାଇବା ପିଇବାରେ ନାନା ପ୍ରକାର କଷ୍ଟ ଦେଲେ; କିନ୍ତୁ ଯେ କଷ୍ଟକୁ ଇଚ୍ଛାରେ ବରଣ କରିଅଛି, ସେ ଏହାକୁ ବା ଡରିବ କାହିଁକି ? ସୁତରାଂ ଏହି ସବୁ କଷ୍ଟ ଭାରତବାସୀମାନେ ଅମ୍ଳାନବଦନରେ ସହ୍ୟ କଲେ । କେବଳ ଏତିକି ନୁହେ, ସେମାନଙ୍କର ଏପରି ସ୍ୱାର୍ଥତ୍ୟାଗ ଦେଖି ଭାରତୀୟ ସ୍ତ୍ରୀମାନେ ମଧ୍ୟ ଏ ସମରରେ ଯୋଗ ଦେବାକୁ ଆରମ୍ଭ କଲେ । ସେମାନେ ନିଜ ନିଜ ସ୍ୱାମୀ, ପୁତ୍ର, କନ୍ୟା ସମସ୍ତଙ୍କୁ ଉତ୍ସାହିତ କରିବାକୁ ଲାଗିଲେ । ଅନେକେ ମଧ୍ୟ ଏହି ପ୍ରକାର ନିୟମ ଭଙ୍ଗ କରି ଜେଲ ଗଲେ ! ସ୍ତ୍ରୀମାନଙ୍କର ଏହିପରି ଦେଶପ୍ରାଣତା ଓ ତ୍ୟାଗଶୀଳତା ଦେଖି ସମସ୍ତେ ଚମତ୍କୃତ ହୋଇ ଯାଇଥିଲେ ଏବଂ ପୁରୁଷମାନେ ଦ୍ୱିଗୁଣ ଉତ୍ସାହରେ ମାତି ଉଠିଲେ ।

୧୯୦୮ ଖ୍ରୀଷ୍ଟାବ୍ଦରେ ମହାତ୍ମା ଗାନ୍ଧୀ ପୁନର୍ବାର ଏହି ଅପରାଧରେ ଅଭିଯୁକ୍ତ ହୋଇଥିଲେ ସେ ତାହାଙ୍କର ଜବାନବନ୍ଦରେ କହିଥିଲେ, "ମୁଁ ସେହି ଗୋଟିଏ ଦୋଷ ସକାଶେ ପୁଣି ଧରା ହୋଇଅଛି । ମୁଁ ସବୁ ଜାଣି ଶୁଣି ଇଚ୍ଛାପୂର୍ବକ ନିୟମଭଙ୍ଗ କରିଅଛି । ଯେତେଦିନ ପର୍ଯ୍ୟନ୍ତ ସରକାର ଭାରତବାସିମାନଙ୍କ ପ୍ରତି ନ୍ୟାୟ ବିଚାର କରି ନାହାନ୍ତି, ସେତେଦିନ ପର୍ଯ୍ୟନ୍ତ ମୁଁ ଏହିପରି ବାରମ୍ବାର ତଥାକଥିତ ନିୟମଭଙ୍ଗ କରୁଥିବି । ସୁତରାଂ ଯଦି ମୋର ଏଥିରେ ଦୋଷ ହୁଏ, ସରକାର ଯେ ଦଣ୍ଡ ଦେବେ, ତାହା ମୁଁ ସହ୍ୟ କରିବାକୁ ପ୍ରସ୍ତୁତ ।" ବିଚାରପତି ଏଥର ଗାନ୍ଧୀଙ୍କୁ ଦୁଇ ବର୍ଷ ସଶ୍ରମ କାରାବାସ ଦଣ୍ଡ ବିଧାନ କଲେ । ଏହିବାଦ ଗାନ୍ଧୀଙ୍କୁ କଠୋର ପରିଶ୍ରମ କରିବାକୁ ପଡିଥିଲା । ଜେଲରେ କିପରି ଭାରତବାସିମାନଙ୍କୁ କଷ୍ଟ ଦିଆ ଯାଉଥିଲା, ତାହା ମହାତ୍ମା ଗାନ୍ଧୀଙ୍କ ଜୀବନର ନିମ୍ନୋକ୍ତ ଘଟନାରୁ ସ୍ପଷ୍ଟ ପରିଚୟ ମିଳେ । ଥରେ ଗାନ୍ଧୀ ମାଟି ଖୋଳୁଥିଲେ ଏବଂ ତାହାଙ୍କ ସହିତ ଆଉ କେତେଜଣ ସତ୍ୟାଗ୍ରହୀ ମଧ୍ୟ ମାଟି ଖୋଳୁଥିଲେ । ସେମାନେ ପ୍ରତ୍ୟେକେ ଶିକ୍ଷିତ ଓ ଧନୀ । ମାଟି ଖୋଳିବାରେ ସେମାନେ ଅଭ୍ୟସ୍ତ ନୁହନ୍ତି । ଏପରି ସ୍ଥଳେ ସେମାନଙ୍କର ମାଟି ଖୋଳିବା ସମୟରେ ଯେ କି କଷ୍ଟ ହେଉଥିବ, ଏହା ସହଜରେ ଅନୁମେୟ ।

ଅବିଶ୍ରାନ୍ତଭାବରେ ମାଟି ତାଡ଼ି ତାଡ଼ି ହାତରେ ଫୋଟକା ହୋଇ ଘେଘା ଉଠିଗଲାଣି, । କେତେକ ନିତାନ୍ତ ଅବଶ ହୋଇ ପଡ଼ିଲେଣି, ତଥାପି ଏ ନିର୍ଦ୍ଦିଷ୍ଟ କାର୍ଯ୍ୟର ବିରାମ ନାହିଁ । ଏହିପରି ସମୟରେ ମାଟି ଖୋଳୁଥିବା ଗାନ୍ଧୀଙ୍କର ଜଣେ ସହକର୍ମୀ ପରିଶ୍ରମର ଆଧିକ୍ୟ ହେତୁରୁ ମୂର୍ଚ୍ଛା ଯାଇ ତଳେ ପଡ଼ିଗଲେ । ଗାନ୍ଧୀ ତାହାଙ୍କୁ ଟିକିଏ ସୁସ୍ଥ ଆଶ୍ୱସ୍ତ କରିବା ନିମିତ୍ତ ତାଙ୍କ ନିକଟକୁ ଯାନ୍ତେ ଜେଲ୍ କର୍ମଚାରିମାନେ ନିବୃତ୍ତ କଲେ । ସେ ସେମାନଙ୍କର ଏହି କ୍ରୂର ଆଦେଶ ପାଳି ମୂର୍ଚ୍ଛାଗତ ବନ୍ଧୁଟିକୁ ଛାଡ଼ି ନିଜ କର୍ତ୍ତବ୍ୟ କରିବାକୁ ଲାଗିଲେ ।

ଏଥର ଗାନ୍ଧୀଙ୍କୁ ଭଲକ୍‌ରଷ୍ଟ ନାମକ ଜେଲରୁ ଜୋହାନ୍ସବର୍ଗ ନାମକ ଅନ୍ୟ ଜେଲକୁ ପଠାଇ ଦେଇଥିଲେ । ଯିବା ସମୟରେ ଗାନ୍ଧୀଙ୍କୁ ସାମାନ୍ୟ ବନ୍ଦୀର ବେଶ ଦେଇ ଯିବାକୁ ପଡ଼ିଥିଲା । ସଙ୍ଗରେ ପ୍ରହରୀ ଥିଲେ । ସ୍ୱୀୟ ଜନପଦର ଗାନ୍ଧୀଙ୍କୁ ମୁଣ୍ଡରେ ବହି ରାଜମାର୍ଗରେ ପଦବ୍ରଜରେ ଗମନ କରିବାକୁ ହୋଇଥିଲା । ଏହିପରି ଅପମାନିତ ହେଉଥିଲେ ମଧ୍ୟ ସେ ତାହାକୁ ଅପମାନ ବୋଲି ମନେ କରୁ ନ ଥିଲେ । ପାଠକେ ଏଥିରୁ ଭାରତବାସିମାନଙ୍କର ଜେଲ ଯନ୍ତ୍ରଣା ସହଜରେ ଅନୁମାନ କରି ପାରିବେ ।

ଦକ୍ଷିଣ ଆଫ୍ରିକାର ଜେଲର ନିୟମାନୁସାରେ ସେଠାରେ ସମସ୍ତଙ୍କୁ ଖାଇବାକୁ ଚର୍ବି ଦିଆଯାଏ । ଘିଅ ମଧ୍ୟ ଜେଲରେ ଦିଆ ଯାଇଥାଏ । ସତ୍ୟାଗ୍ରହୀମାନେ ଚର୍ବି ଗ୍ରହଣ କରିବାକୁ ନିଷେଧ କରିଦେଲେ । ସେମାନଙ୍କୁ ଘିଅ ଆଉ ଦିଆ ଗଲା ନାହିଁ । କେବଳ ମହାତ୍ମା ଗାନ୍ଧୀଙ୍କୁ ଘିଅ ମିଳିବ ବୋଲି ହୁକୁମ ହେଲା । କିନ୍ତୁ ସମସ୍ତଙ୍କୁ ଘିଅ ମିଳୁ ନ ଥିବା ହେତୁରୁ ମହାତ୍ମା ଗାନ୍ଧୀ ମଧ୍ୟ ଘିଅ ଗ୍ରହଣ କରିବାକୁ ଅସ୍ୱୀକାର କଲେ । ଜେଲ ଭିତରେ ପୁଣି ଏକପ୍ରକାର ସତ୍ୟାଗ୍ରହ ଆରମ୍ଭ କଲେ । ସମସ୍ତେ ନିଶ୍ଚୟ କଲେ ଯେ, ଭାରତ-ବାସୀ ପକ୍ଷରେ ଚର୍ବି ଖାଇବା ଧର୍ମବିରୁଦ୍ଧ କାର୍ଯ୍ୟ । ସୁତରାଂ ଘିଅ ନ ମିଳିବା

ପର୍ଯ୍ୟନ୍ତ କେହି ଆଉ ଅନ୍ନ ଗ୍ରହଣ କରିବେ ନାହିଁ । ଏହିପରି ଜେଲ ଭିତରେ ଅନଶନ ବ୍ରତ ଆରମ୍ଭ ହେଲା । ଉପବାସ କରି ୪।୫ ଦିନ ପରେ ଅନେକେ ସଂଜ୍ଞାଶୂନ୍ୟ ହୋଇ ପଡ଼ିଲେ । ଚାରିଆଡ଼େ ଗୋଟିଏ ଚହଳ ପଡ଼ିଗଲା । ସରକାର କର୍ମଚାରୀମାନେ ଦେଖିଲେ ଯେ, ଆଉ ଏପରି ଚଳିବ ନାହିଁ । ସୁତରାଂ ଘିଅର ବ୍ୟବସ୍ଥା ହେଲା । ସମସ୍ତେ ଅନଶନ ବ୍ରତ ଛାଡି ଆହାର ଗ୍ରହଣ କଲେ । ଖାଦ୍ୟ ବିଷୟରେ ଏହିପରି ଅନେକ ଥର କଳହ ହୋଇଅଛି । କର୍ତ୍ତାମାନେ ଭାବିଥିଲେ ଯେ, ଏହିପରି କଷ୍ଟ ଦେଲେ ସମସ୍ତେ ଜେଲକୁ ଡରିଯିବେ । କିନ୍ତୁ ସତ୍ୟାଗ୍ରହୀମାନେ ଅଚଳ ଅଟଳ । ସେମାନେ ଏଥିରେ ଭୀତ ହେବେ କାହିଁକି ? ଆଉ ଥରେ ମହାତ୍ମା ଗାନ୍ଧୀଙ୍କୁ କହା ଯାଇଥିଲା ଯେ, ସେ ତାହାଙ୍କର ଜଣେକ ମିତ୍ରଙ୍କଦ୍ୱାରା ପାଇଖାନା ସଫା କରାଇ ନେବେ । କିନ୍ତୁ ଗାନ୍ଧୀ ତାହାଙ୍କୁ ନ କହି ନିଜ ହାତରେ ତାହା ସଫା କରି ଦେଇଥିଲେ । ଥରେ ଗାନ୍ଧୀଙ୍କୁ ଗୋଟିଏ ଅଲଗା ଘରେ ଭର୍ତ୍ତି କରିଦେଲେ । ସେହି ଘରେ ଚୈନ ବଦମାସ୍ କୟେଦ ସବୁ ଥାନ୍ତି । ଗାନ୍ଧୀଙ୍କୁ ଦେଖାଇ ସେମାନେ ନାନାପ୍ରକାର ବିଭତ୍ସକାଣ୍ଡ କରିଥିଲେ । ଗାନ୍ଧୀ ଥରେ ପାଇଖାନା ଯାଇଅଛନ୍ତି, ସେ ଯେଉଁ ଘରେ ପାଇଖାନା ବସିଅଛନ୍ତି, ସେହି ଘର ଭିତରକୁ ଗୋଟିଏ ଷଣ୍ଡା ବଦମାସ୍ କୟେଦକୁ ଛାଡ଼ି ଦିଆଗଲା । ଏହି ଲୋକଟି ଗାନ୍ଧୀଙ୍କୁ ଉଠାଇ ତଳେ କଚଡ଼ି ଦେଇଥିଲା । ଜେଲ ଭିତରେ ଏହିପରି ନାନାପ୍ରକାର କଷ୍ଟ ଦିଆ ଯାଉଥିଲା । ମହାତ୍ମା ଗାନ୍ଧୀ ଅନେକ ସମୟରେ ଏହି କଥା ସବୁ ଚିନ୍ତା କରି କହିଥାନ୍ତି । ଏହି ସବୁ ଶୁଣିଲେ ମନ କଣ ହୁଏ, ତାହା ଟିକିଏ ପାଠକେ ଭାବି ନେବେ । ବିଶେଷ ଆଉ କଣ ଲେଖାଯିବ ।



# ନବମ ଅଧ୍ୟାୟ ।



ନିର୍ଦ୍ଦିଷ୍ଟ ସମୟ ଅତିବାହିତ ହୁଅନ୍ତେ ମହାତ୍ମା ଗାନ୍ଧୀ କାରାମୁକ୍ତ ହୋଇ ଆଫ୍ରିକାସ୍ଥ ପ୍ରପୀଡ଼ିତ ଭାରତୀୟମାନଙ୍କର ଦୁଃଖର କାହାଣୀ ବିଲାତ ଓ ଭାରତ-ବର୍ଷରେ ପ୍ରଚାର କରିବା ନିମିତ୍ତ ଆୟୋଜନ କଲେ । ଦୁଇଟି ପ୍ରତିନିଧି-ଦଳ (Deputation) ଗଠିତ ହେଲା । ସ୍ୱୟଂ ଗାନ୍ଧୀ ଏକ ପ୍ରତିନିଧିଦଳ ସହିତ ବିଲାତ ଯିବେ ଓ ମିଃ ପୋଲକ ଅପର ଦଳ ନେଇ ଭାରତ ଯାତ୍ରା କରିବେ, ଏହି କଥା ଠିକ କରାଗଲା । ଏହି ଅବସରରେ କର୍ତ୍ତୃପକ୍ଷ ନିର୍ବାଚିତ ଦଳ ମଧ୍ୟରୁ କେତେକଙ୍କୁ ନିରୁପଦ୍ରବ ପ୍ରତିରୋଧକାରୀ ଅପରାଧରେ ଅଭିଯୁକ୍ତ କଲେ ଏବଂ ଫଳରେ ସେମାନଙ୍କୁ ଜେଲ ଯିବାକୁ ହେଲା । କିନ୍ତୁ ମହାତ୍ମା ଗାନ୍ଧୀ ଏଥିରେ ତିଳେ ମାତ୍ର ବିଚଳିତ ହୋଇ ନ ଥିଲେ । ୧୯୦୯ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ମହାତ୍ମା ଗାନ୍ଧୀ କେତେକ ସଙ୍ଗୀଙ୍କ ସହ ବିଲାତ ଯାତ୍ରା କଲେ । ମିଃ ପୋଲକ ମଧ୍ୟ ଭାରତରେ ଉପସ୍ଥିତ ହୋଇ ଆନ୍ଦୋଳନ ଆରମ୍ଭ କଲେ ।

ଦକ୍ଷିଣ ଆଫ୍ରିକା ଯେ ଅରାଜକ, ଭାରତୀୟମାନେ ସେଠାରେ କୁକୁର ବିରାଡ଼ି ପରି ନିଗୃହୀତ ହୁଅନ୍ତି, ଏକଥା ବିଲାତର "ଟାଇମ୍‌ସ" ପ୍ରମୁଖ ପତ୍ରିକାମାନ ବଜ୍ରନିର୍ଘୋଷରେ ପ୍ରଚାର କରୁଥିଲେ । ପୁଣି ମହାତ୍ମା ଗାନ୍ଧୀ ବିଲାତରେ ପହଞ୍ଚି ଯେ ତୁମୁଳ ଆନ୍ଦୋଳନ ଉଠାଇଲେ, ସେଥିରେ ବିଲାତ ସରକାର ଆଉ ବେଶିଦିନ ସ୍ଥିର ହୋଇ ରହି ପାରିଲେ ନାହିଁ । ଦିନୁ ଦିନ ଘଟନାଟି ଗୁରୁତର ହୋଇ ଉଠିଲା । ସେମାନେ ବୁଝି ପାରିଲେ ଯେ, ଏହି ଅବସ୍ଥାର ପରିବର୍ତ୍ତନ ଆବଶ୍ୟକ । ଏହି ସମୟରେ ଟ୍ରାନ୍ସଭାଲର ମନ୍ତ୍ରଣା—ସଚିବଗଣ ବିଲାତରେ ଉପସ୍ଥିତ ଥିଲେ । ବିଲାତରେ କର୍ତ୍ତୃପକ୍ଷ ଏ ସୁଯୋଗ ପରିତ୍ୟାଗ ନ କରି, ଉଭୟ ଦଳ ମଧ୍ୟରେ ବିରୋଧ ମେଣ୍ଟାଇ ଦେବା ଲାଗି ଅବଲମ୍ବେ

ଯତ୍ନବାନ୍ ହେଲେ । କିନ୍ତୁ ଜେନେରାଲ ସ୍ମଟ୍ସ୍ ଏ ଆମେଣ୍ଡମେଣ୍ଟରେ ସମ୍ମତ ହେଲେ ନାହିଁ । ଭାରତୀୟମାନଙ୍କ ସହିତ କଠୋର ବ୍ୟବହାର ଭିନ୍ନ ଶାନ୍ତ ବ୍ୟବହାର କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା ।

ମହାତ୍ମା ଗାନ୍ଧୀ ଦେଖିଲେ ଯେ, ବ୍ୟାପାରଟି ସହଜରେ ନିଷ୍ପତ୍ତି ହେବାର ନୁହେଁ । ଭାରତୀୟମାନଙ୍କ ପକ୍ଷରେ ଆନ୍ଦୋଳନ ସମଭାବରେ ଜାଗ୍ରତ ରଖି ଦୃଢ଼ପଦରେ କର୍ତ୍ତବ୍ୟ ପାଳନ କରିବା ଉଚିତ । କିଏ ଜାଣେ, ବିଲାତରେ ଏହିପରି ଆନ୍ଦୋଳନ ଜାଗ୍ରତ କରି ରଖିଲେ ଦିନେ ମୁକ୍ତିମାର୍ଗ ନିର୍ଦ୍ଧାରିତ ହୋଇଯିବ । ପୁଣି ଏହି ଉଦ୍ଦେଶ୍ୟ ସାଧନ ନିମିତ୍ତ ପ୍ରଚୁର ଅର୍ଥ ପ୍ରୟୋଜନ । ଅର୍ଥ ସଂଗ୍ରହଭାର କେତେ ଜଣ ସ୍ୱେଚ୍ଛାସେବକଙ୍କ ହସ୍ତରେ ଦେଇ ଗାନ୍ଧୀ ଟ୍ରାନ୍ସଭାଲ ଫେରି ଆସିଲେ । ଆନ୍ଦୋଳନ ବିଲାତରେ ଦୃଢ଼ବତ୍ ଅକ୍ଷୁଣ୍ଣଭାବରେ ଚାଲିଲା । ଉଦାରମତାବଲମ୍ବୀ, ନ୍ୟାୟବାନ୍ କେତେକ ରାଜନୀତିବିଶାରଦ ଇଂରାଜ ଦକ୍ଷିଣ ଆଫ୍ରିକାବାସୀ ଭାରତୀୟମାନଙ୍କର ଦୁର୍ଦ୍ଦଶାରେ ବିଚଳିତ ହୋଇ ଯାଇଥିଲେ । ସେମାନେ ଏହି ଶୋଚନୀୟ ଅବସ୍ଥାର ପରିବର୍ତ୍ତନ ସାଧନ ନିମିତ୍ତ ଯତ୍ନବାନ୍ ହେଲେ ।

ଇତିମଧ୍ୟରେ ଭାରତବର୍ଷରେ ଆଫ୍ରିକାର ଆର୍ତ୍ତନାଦ ପହଞ୍ଚିଥିଲା । ଭାରତୀୟ ସମ୍ବାଦପତ୍ର ସକଳ ଦକ୍ଷିଣ ଆଫ୍ରିକାର ଶାସନକର୍ତ୍ତାମାନଙ୍କର ଅଶିଷ୍ଟାଚରଣର ବିପକ୍ଷରେ ଆନ୍ଦୋଳନ ଆରମ୍ଭ କରି ଦେଲେ । ମିଃ ପୋଲକ୍ ଭାରତବର୍ଷରେ ଉପସ୍ଥିତ ହୋଇ ଅଗ୍ନିସ୍ରାବୀ ଭାଷାରେ ଆଫ୍ରିକାପ୍ରବାସୀ ଭାରତୀୟମାନଙ୍କର ମର୍ମନ୍ତୁଦ କାହାଣୀ ପ୍ରଚାର କରିବାକୁ ଲାଗିଲେ । ନଗରେ ନଗରେ ସଭାର ଅନୁଷ୍ଠାନ ହୋଇ ବକ୍ତୃତାର ସ୍ରୋତ ପ୍ରବାହିତ ହେଲା । ପ୍ରବାସୀ ସ୍ୱଦେଶବାସିଙ୍କ ନିମିତ୍ତ ସମସ୍ତଙ୍କ ପ୍ରାଣରେ ଏକ ତୀବ୍ର ସହବେଦନା ଜାଗି ଉଠିଲା । ବିଦେଶ ଯାଇ ସୁଦ୍ଧା ଯେଉଁମାନେ ଅଶେଷବିଧ ନିର୍ଯ୍ୟାତନ ଓ ଲାଞ୍ଛନା ସହ୍ୟ କରି ମାତୃଭୂମିର ମୁଖ ଉଜ୍ଜ୍ୱଳ ରଖିଅଛନ୍ତି, ସେମାନେ ମସ୍ତକର

ମୁକୁଟ ମଣି, ଜାତିର ଗୌରବ । ଏହି ସମସ୍ତ ନର୍ଯ୍ୟାତିତ ଭାରତୀୟମାନଙ୍କପାଇଁ ସେ ସମୟରେ ବମ୍ବେସହରର ଧନକୁବେର ସେମାନଙ୍କର ଧନଭଣ୍ଡାରର ଦ୍ୱାର ଉନ୍ମୁକ୍ତ କରି ଦେଲେ । କେତେକ ସାମନ୍ତ ରାଜା ମଧ୍ୟ ଅର୍ଥସାହାଯ୍ୟ କଲେ । ସାର୍ ରତନ ଟାଟା ବହୁ ଅର୍ଥ ଦାନ କରିଥିଲେ । ଅଳ୍ପଦିନ ମଧ୍ୟରେ ପ୍ରାୟ ଦେଢ଼ଲକ୍ଷ ଟଙ୍କା ସଂଗୃହୀତ ହୋଇଗଲା ।

୧୯୧୦ ଖ୍ରୀଷ୍ଟାବ୍ଦରେ ମହାନୁଭବ ଲୋକପୂଜ୍ୟ ଗୋପାଳକୃଷ୍ଣ ଗୋଖେଲ ଭାରତୀୟ ବ୍ୟବସ୍ଥାପକ ସଭାରେ ଉପସ୍ଥିତ ବିଷୟରେ ଘୋର ଆନ୍ଦୋଳନ ଆରମ୍ଭ କଲେ । ନେଟାଲର ଚୁକ୍ତିବଦ୍ଧ ଶ୍ରମଜୀବୀ ପ୍ରେରଣ ଯାହାଦ୍ୱାରା ବନ୍ଦ ହୁଏ, ସେଥିପାଇଁ ଭାରତ ସରକାରଙ୍କ ନିକଟରେ ସେ ଆବେଦନ କଲେ ତାହାଙ୍କର ଅକାଟ୍ୟ ଯୁକ୍ତିପୂର୍ଣ୍ଣ ବକ୍ତୃତାରେ ବଡ଼ଲାଟ ବାହାଦୁରଙ୍କର ଆସନ ଟଳିଲା । ଉକ୍ତ ମହୋଦୟ ଗୋଖେଲଙ୍କର ପ୍ରସ୍ତାବର ସାରବତ୍ତା ଅନୁଭବ କଲେ । ପରିଶେଷରେ ନେଟାଲର ଚୁକ୍ତିବଦ୍ଧ ଶ୍ରମଜୀବୀ ପ୍ରେରଣର ବ୍ୟବସ୍ଥା ଏକାବେଳକେ ରହିତ କରାଗଲା । ଶ୍ରୀଯୁକ୍ତ ଗାନ୍ଧୀଙ୍କର ସାଧନା ସାର୍ଥକତାର ପଥରେ ଦ୍ରୁତ ବେଗରେ ଅଗ୍ରସର ହେଲା । ନିରୁପଦ୍ରବ ପ୍ରତିରୋଧ-ନୀତି ( Passive Resistance ) ବିଜୟ ଗର୍ବରେ ତାହାର ମହାମନ୍ତ୍ରର ସଫଳତା ବଙ୍ଗ-ବାସିର କର୍ଣ୍ଣରନ୍ଧ୍ରରେ ପ୍ରବେଶ କରାଇ ଦେଲା ।

ପ୍ରତ୍ୟେକ ସମାଜରେ ଭଲ ଓ ମନ୍ଦ ଦୁଇ ଶ୍ରେଣୀର ଲୋକ ଦେଖା-ଯାଆନ୍ତି । ଯେଉଁ ଇଂରାଜମାନେ ଅର୍ଦ୍ଧ ବିଜୟୀ ଓ ବିରାଟ ସାମ୍ରାଜ୍ୟର ଅଧୀଶ୍ୱର, ସେମାନଙ୍କ ମଧ୍ୟରେ ମନୀଷୀ, କରୁଣ ଓ ଉଦାରହୃଦୟ ମହାତ୍ମାଙ୍କର ଜନ୍ମ ଅସମ୍ଭବ ନୁହେଁ । ଦକ୍ଷିଣ ଆଫ୍ରିକାସ୍ଥିତ ଶ୍ୱେତାଙ୍ଗ ସମାଜରେ ନ୍ୟାୟପରାୟଣ, ସମଦର୍ଶୀ ଓ ଉଦାରଚେତା ମହାତ୍ମାଙ୍କର ଅଭାବ ନ ଥିଲା । ସେହି ସକଳ ମହାନୁଭବ ବ୍ୟକ୍ତି ଦୁର୍ବଳ ଭାରତୀୟମାନଙ୍କର ପକ୍ଷାବଲମ୍ବନ କରିଥିଲେ । ତନ୍ମଧ୍ୟରେ ସାର ଉଇଲିୟମ ହଜ୍‌ସନଙ୍କ ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କର

ନେତୃତ୍ୱରେ ଏକଦଳ ଶ୍ୱେତାଙ୍ଗ ଔପନିବେଶିକ ଗଭର୍ଣ୍ଣମେଣ୍ଟର ସ୍ୱେଚ୍ଛାଚାର-ମୂଳକ ଶାସନନୀତି ବିରୁଦ୍ଧରେ ଦଣ୍ଡାୟମାନ ହେଲେ । ଏହାପରେ ଗୋଟିଏ ଜାତି ପ୍ରତି ଅତ୍ୟାଚାର ଓ ଅବିଚାର ଯେ ବ୍ରିଟିଶଶାସନର ଲକ୍ଷ୍ୟ, ତାହା ସେମାନେ ପରିଷ୍କାରରୂପେ ସର୍ବସାଧାରଣଙ୍କୁ ବୁଝାଇବାକୁ ଚେଷ୍ଟା କଲେ । କେବଳ ତାହା ନୁହେଁ, 'ହକ୍‌ସନ କମିଟି' ନାମରେ ଗୋଟିଏ ସମିତି ସ୍ଥାପନ କରି ଏ ସମସ୍ତ ନ୍ୟାୟପରାୟଣ ଇଂରାଜ ସ୍ୱଜାତିର ଅତ୍ୟାଚାର ଓ ଅବିଚାରର ଘୋରତର ପ୍ରତିବାଦ ଉତ୍ଥାପନ କଲେ । ଏଥିରେ ସ୍ୱାର୍ଥାନ୍ଧ, ସଙ୍କୀର୍ଣ୍ଣଚେତା ଶ୍ୱେତାଙ୍ଗଗଣ ଆହୁରି କ୍ରୁଦ୍ଧ ହୋଇ ଉଠିଲେ । ସେମାନେ ଦ୍ୱିଗୁଣ ଉତ୍ସାହରେ ଭାରତୀୟମାନଙ୍କୁ ଲାଞ୍ଛିତ ଓ ନିର୍ଯ୍ୟାତିତ କରିବାକୁ ବଦ୍ଧପରିକର ହେଲେ ।

ଏହି ଅତ୍ୟାଚାର-ଅଗ୍ନି ଭୀଷଣ ତେଜରେ ଜ୍ୱଳି ଉଠିଲା । ଟ୍ରାନ୍‌ସଭାଲର ଶାସନକର୍ତ୍ତାଗଣ ଗୋଟିଏ ନୂତନ ଆଇନ ପାଶ କଲେ । ଏହି ନୂତନ ନିୟମର ମର୍ମ ଏହି ଯେ, ଶାସନକର୍ତ୍ତାଗଣ ଇଚ୍ଛା କଲେ ଯେ କୌଣସି ବ୍ୟକ୍ତିକୁ ନିର୍ବାସନ ଦଣ୍ଡ ଦେଇ ପାରିବେ । କୌଣସି ଆପତ୍ତି ଗୃହୀତ ହେବ ନାହିଁ । ଏହିପରି ଯଥେଚ୍ଛାଚାରମୂଳକ ବିଧାନ ପ୍ରବର୍ତ୍ତିତ ହେବାରୁ ଦକ୍ଷିଣ ଆଫ୍ରିକାରେ ଗୋଟିଏ ହଲ୍‌ଚଲ ପଡ଼ିଗଲା । ନବ ପ୍ରଚଳିତ ଆଇନ ବଳରେ ସରକାର ସମ୍ଭ୍ରାନ୍ତ ଓ ଶ୍ରେଷ୍ଠ ଭାରତୀୟ ନେତାଙ୍କୁ କଠିନ ନିର୍ବାସନ ଦଣ୍ଡ ବିଧାନ କଲେ । କିନ୍ତୁ ନେତୃଗଣ ସେଥିରେ କ୍ଷାନ୍ତ ହେଲେ ନାହିଁ । ସେମାନେ ଅବିଳମ୍ବେ ଫେରି ଆସିଲେ । କର୍ତ୍ତୃପକ୍ଷ ଏହି ସକଳ ସାହସିକ ଭାରତୀୟମାନଙ୍କୁ ଦମନ କରିବାର କୌଣସି ଉପାୟ ଦେଖିଲେ ନାହିଁ । ବହୁ ଚିନ୍ତା ପରେ ସେମାନେ କେତେଗୁଡ଼ିଏ ଭାରତବାସିଙ୍କୁ ଧରି ଜାହାଜରେ ବଳପୂର୍ବକ ଭର୍ତ୍ତି କରି ଭାରତବର୍ଷରେ ଛାଡ଼ିଦେଇ ଆସିଲେ ।

ଭାରତବର୍ଷରେ ଏମାନେ ପହଞ୍ଚିବାରୁ ଆନ୍ଦୋଳନ ଦ୍ୱିଗୁଣିତ ହୋଇ ଉଠିଲା । ସ୍ୱଦେଶବାସିମାନଙ୍କଠାରୁ ଉତ୍ସାହ ଓ ଆର୍ଥିକ ସାହାଯ୍ୟ ପାଇ ନେତୃ-

ଗଣ ପୁନର୍ବାର ଦକ୍ଷିଣ ଅଫ୍ରିକାକୁ ଗମନ କଲେ । ଦକ୍ଷିଣ ଅଫ୍ରିକାର ସରକାର ଭାରତୀୟମାନଙ୍କର ଜିଦ୍ ଦେଖି ଉନ୍ମତ୍ତ ପ୍ରାୟ ହୋଇଗଲେ । ସେମାନେ ସ୍ଥିର କଲେ, ଭାରତୀୟ ନେତୃଗଣଙ୍କୁ କୌଣସି ପ୍ରକାରେ ଟ୍ରାନ୍ସଭାଲରେ ପ୍ରବେଶ କରିବାକୁ ଦେବେ ନାହିଁ । ଜାହାଜରୁ କଦାପି ତୀରରେ ଅବତରଣ କରିବାକୁ ମଧ୍ୟ ଦିଆ ଯିବ ନାହିଁ ।

କର୍ତ୍ତୃପକ୍ଷଙ୍କର ଅଭିପ୍ରାୟ ଅବଗତ ହୋଇ ନିର୍ବାସିତଗଣ ବିଚଳିତ ହୋଇ ନ ଥିଲେ । ସେମାନେ ସ୍ଥିର କରିଥିଲେ ଯେ, ତୀରରେ ସେମାନେ ନିଶ୍ଚୟ ଅବତୀର୍ଣ୍ଣ ହେବେ । ଏହି ଦଳ ମଧ୍ୟରେ ନାରାୟଣ ସ୍ୱାମୀ ନାମକ ଜଣେ ଯୁବକ ଥିଲେ । ତାହାଙ୍କ ସାହସ ଅସାଧାରଣ, ସେ ବିପଦରେ ତିଳେ ମାତ୍ର ବିଚଳିତ ହୋଇ ନ ଥିଲେ । ପହଁରି ପହଁରି ଯାଇଁ ସେ କୂଳରେ ପହଞ୍ଚିଲେ । କିନ୍ତୁ ସରକାର ପକ୍ଷର ପ୍ରହରୀମାନେ ତାହାଙ୍କୁ ବନ୍ଦରରେ ଉଠିବା ନିମିତ୍ତ ଅନୁମତି ଦେଲେ ନାହିଁ । ସେମାନେ ନାରାୟଣ ସ୍ୱାମୀଙ୍କ ପଛରେ ଗୋଡ଼ାଇଲେ । ଯୁବକ ବିତାଡ଼ିତ ହୋଇ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପହଁରି ଗଲେ । ଏହିପରି ପହଁରି ପହଁରି ଶେଷରେ ଯାଇ ସେ ପର୍ତ୍ତୁଗିଜ ସୀମାରେ ଉପନୀତ ହେଲେ । ଡେଲାଗୋଆ ଉପସାଗରରେ ପଡ଼ି ଏହି ଅସମସାହସିକ ଯୁବକ ଆଉ ଆତ୍ମରକ୍ଷା କରି ପାରିଲେ ନାହିଁ । ସେ ଅଗାଧ ସଲିଳ ତଳେ ଚିରବିଶ୍ରାମ ଲାଭ କଲେ । ଧନ୍ୟ ଯୁବକ ! ଧନ୍ୟ ଦେଶପ୍ରାଣତା !

ଏହି ରୋମହର୍ଷଣ ବ୍ୟାପାର ଯଥାସମୟରେ ଭାରତବର୍ଷରେ ଆସି ପ୍ରଚାରିତ ହୋଇଗଲା । ଏହା ଯେ ଶୁଣିଲା, ତାହାର ହୃଦୟ ଶୋକ ଓ କ୍ରୋଧରେ ବିଦୀର୍ଣ୍ଣ ହୋଇଗଲା । ଗୃହଅଡ଼େ ସଭା ସମିତି ବସି ଏହାର ତୁମୁଳ ଆନ୍ଦୋଳନ ଆରମ୍ଭ ହେଲା । ଶିମଲା ପାହାଡ଼ରେ ବଡ଼ ଲାଟଙ୍କର ଆସନ ଟଳମଳ ହେଲା । ଏହି ପାଶବିକ ନୃଶଂସ ଘଟନା ମଧ୍ୟ ଅନେକ ଇଂରେଜମାନଙ୍କର ହୃଦୟକୁ ବିଗଳିତ କରି ଦେଇଥିଲା । ଟ୍ରାନ୍ସଭାଲର ଶାସନପ୍ରଣାଳୀ ଯେପରି ପରିବର୍ତ୍ତିତ ହୁଏ,

ଭାରତବାସିମାନଙ୍କପାଇଁ ଯେପର ସୁବ୍ୟବସ୍ଥା ହୁଏ, ସେ ସବୁ ବିଷୟରେ ଭାରତ ସରକାର ବିଲାତର ସରକାରଙ୍କର ଦୃଷ୍ଟି ଆକର୍ଷଣ କଲେ । ବିଲାତ-ସରକାରଙ୍କର ଆସନ ଏଥର ଟଳିଲା । ଫଳରେ ଏହି ନବାସନ ଦଣ୍ଡବିଧି ଉଠାଇ ଦିଆଗଲା । ସତ୍ୟ ଓ ନ୍ୟାୟର ମର୍ଯ୍ୟାଦା ରକ୍ଷିତ ହେଲା । ମହାତ୍ମା ଗାନ୍ଧୀଙ୍କର ସତ୍ୟାଗ୍ରହର ଜୟବାଣୀ ସର୍ବତ୍ର ଘୋଷିତ ହେଲା । ପ୍ରକୃତରେ ମନୁଷ୍ୟ ଯଦି ଜୀବନକୁ ବଳି ଦେଇ ପାରେ, ଜଗତରେ ଏପରି କୌଣସି ଶକ୍ତି ନାହିଁ, ଯାହା କି ତାହାର ଉଦ୍ଦେଶ୍ୟ ସାଧନରେ ବାଧା ଦେବ । ନାରାୟଣ ସ୍ୱାମୀ ଆଜି ସର ନାହାନ୍ତି । ସେ ଜନନୀ ଜନ୍ମଭୂମିର ଅନନ୍ତକ୍ରୋଡ଼ରେ ଶୟନ କରି ଭାରତବାସିମାନଙ୍କର ଆଦର୍ଶପୁରୁଷ ହୋଇଅଛନ୍ତି । ଧନ୍ୟ ନାରାୟଣ ! ତୁମ୍ଭର ନାମ ଆଜି ତୁମ୍ଭେ ସାର୍ଥକ କରିଅଛ । ଆଶୀର୍ବାଦ କର, ତୁମ୍ଭର ପରି ପ୍ରତ୍ୟେକ ଭାରତବାସୀ ତାହାର ନାମ ସାର୍ଥକ କରୁ ।



## ଦଶମ ଅଧ୍ୟାୟ ।



ଇତିମଧ୍ୟରେ ସମସ୍ତ ଦକ୍ଷିଣ ଆଫ୍ରିକାରେ ସମ୍ମିଳିତ ରାଜ୍ୟ ପ୍ରତିଷ୍ଠିତ ହେଲା । ଏପର୍ଯ୍ୟନ୍ତ ସେଠାରେ ଚାରିଗୋଟି ରାଜ୍ୟ ଥିଲା କହିଲେ ଚଳେ । ଯଥା—କେପ୍ କଲୋନି, ନେଟାଲ, ଟ୍ରାନ୍ସଭାଲ ଓ ଅରେଞ୍ଜୀ ସ୍ୱାଧୀନ ରାଜ୍ୟ । ଏହି ୪ଟି ରାଜ୍ୟ ମିଳି ଦକ୍ଷିଣ ଆଫ୍ରିକାରେ ସମ୍ମିଳିତ ରାଜ୍ୟ ( Union of South Africa ) ବସିଲା । ଦକ୍ଷିଣ ଆଫ୍ରିକାରେ ଭାରତବାସିମାନେ କିପରି ନିର୍ଯ୍ୟାତନ ଭୋଗୁଅଛନ୍ତି, ତାହା ଭଲରୂପେ ବିଲାତସରକାରଙ୍କୁ ଜଣା ପଡ଼ିଗଲା । ସୁତରାଂ ଏହି ନୂତନ ଶାସନ ସଂସ୍କାର ସମୟରେ ବିଲାତ ସରକାର ଦକ୍ଷିଣ ଆଫ୍ରିକାର ସରକାରଙ୍କୁ ଗୋଟିଏ ନୂତନ

ଆଇନ ପ୍ରଚଳିତ କରିବାକୁ ଅନୁରୋଧ କଲେ । ୧୯୦୭ ଖ୍ରୀଷ୍ଟାବ୍ଦରେ ଯେଉଁ ଆଇନଟି ଜାରି ହୋଇଅଛି ତାହା ଉଠାଇ ଦେବାକୁ ହେବ । ଦକ୍ଷିଣ ଅଫ୍ରିକାରେ ଜାତିଭେଦ ଭାବ କିଛି ରହିବ ନାହିଁ । ଭାରତବର୍ଷରୁ ଦକ୍ଷିଣ ଅଫ୍ରିକାକୁ ନୂଆ ଲୋକ ଆସିବାକୁ ଯଦି ଆପତ୍ତି ହୁଏ, ତେବେ ଗୋଟିଏ ନିର୍ଦ୍ଦିଷ୍ଟ ସଂଖ୍ୟା ସ୍ଥିର କରି ଦିଆଯିବ । ଶିକ୍ଷିତ ଭାରତବାସୀ ପ୍ରତିବର୍ଷ ଯିବା ଆସିବା କରି ପାରିବେ । ଭାରତବାସିମାନଙ୍କର ଅଭାବ ଅଭିଯୋଗମାନ ଶୁଣି ତହିଁର ସୁବ୍ୟବସ୍ଥା କରାଯିବ । ସମୁଦ୍ର ତୀରରେ ଯେଉଁ ସବୁ ଗ୍ରାମ ଓ ନଗର ଅଛି, ତହିଁରେ ଲୋକମାନେ ଯେଉଁ ସବୁ ସୁବିଧା ଭୋଗ କରନ୍ତି, ତାହା ଜାତିନିର୍ବିଶେଷରେ ସମସ୍ତେ ଭୋଗ କରି ପାରିବେ । ଇତ୍ୟାଦି ।

ବିଲାତର କର୍ତ୍ତୃପକ୍ଷମାନଙ୍କ ନିକଟରୁ ଏହିପରି ସମାଚାର ପାଇ ଦକ୍ଷିଣ ଅଫ୍ରିକାର ସରକାର ବିପଦ ଗଣିଲେ । କିନ୍ତୁ ବିଲାତର ଆଦେଶକୁ ଲଙ୍ଘନ କରିବା ସହଜ ନୁହେଁ । ଯାହାହେଉ ଭାରତବାସିମାନଙ୍କର କଷ୍ଟ ସାମାନ୍ୟ ପରିମାଣରେ ହ୍ରାସ ହେଲା । ସରକାର ଭାରତୀୟ ନେତାମାନଙ୍କ ସହିତ ଏକପ୍ରକାର ମୀମାଂସା କରି ନେଲେ । ସତ୍ୟାଗ୍ରହ ଲଢ଼ାଇ ବନ୍ଦ ରଖିବା ନିମିତ୍ତ ଅନୁରୋଧ କଲେ । ତାହା ସହିତ ଏକଥା ମଧ୍ୟ କହି ରଖିଲେ ଯେ, ୧୯୧୨ ଖ୍ରୀଷ୍ଟାବ୍ଦରେ ଗୋଟିଏ ନିୟମ ପାଶ କରାଯିବ । ସେହି ନିୟମଟି ପାଶ ହୋଇଗଲେ ଭାରତବାସିମାନଙ୍କର ସମସ୍ତପ୍ରକାର ଅସୁବିଧା ଦୂର ହୋଇଯିବ । ଏହି ପ୍ରସ୍ତାବରେ ଭାରତବାସିମାନେ କିଛି ଆପତ୍ତି କରି ନ ଥିଲେ । ସରକାରଙ୍କର କଥା ରକ୍ଷା କରି ସେମାନେ ୧୯୧୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସତ୍ୟାଗ୍ରହ ଲଢ଼ାଇ ବନ୍ଦ ରଖିଲେ । ୧୯୧୨ ଖ୍ରୀଷ୍ଟାବ୍ଦରେ ନୂତନ ଆଇନ ପାଶ ହେଲା ସତ୍ୟ, କିନ୍ତୁ ଭାରତବାସିମାନଙ୍କ କଥା ଭଲକରି କିଛି ବୁଝା ହେଲା ନାହିଁ । କେବଳ ପୁରୁଣା ଘରେ ଚୂନ ଲିପିଲା ପରି ହେଲା ।

ଇତିମଧ୍ୟରେ ମହାମତି ଗୋଖେଲ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଦକ୍ଷିଣ ଅଫ୍ରିକା ଯିବେ ବୋଲି ସ୍ଥିର କରିଥିଲେ । ଭାରତ ସରକାର ଓ ସାମ୍ରାଜ୍ୟ ସରକାର ଉଭୟଙ୍କର ଅନୁମତି ନେଇ ଗୋଖେଲ୍ ଦକ୍ଷିଣ ଅଫ୍ରିକାରେ ଉପସ୍ଥିତ ହେଲେ । ସେ ସେଠାରେ ପ୍ରାୟ ତିନି ସପ୍ତାହକାଳ ରହି ଦକ୍ଷିଣ ଅଫ୍ରିକାର ଭାରତବାସିମାନଙ୍କର ଅବସ୍ଥା ଭଲ କରି ତଦନ୍ତ କଲେ ।

ଦକ୍ଷିଣ ଅଫ୍ରିକାରେ ସେ ଯେଉଁ ଅଞ୍ଚଳକୁ ଯାଇଥିଲେ, ସେହିଠାରେ ତାହାଙ୍କର ଅଭ୍ୟର୍ଥନା ହୋଇଥିଲା । ଭାରତବାସୀ ତ ତାହାଙ୍କର ଅଭ୍ୟର୍ଥନା କରିଥିଲେ; କିନ୍ତୁ ଦକ୍ଷିଣ ଅଫ୍ରିକାର ସମ୍ମିଳିତ ସରକାର ମଧ୍ୟ ଗୋଖେଲ ମହାଶୟଙ୍କୁ ଯଥେଷ୍ଟ ଆଦର ଓ ସମ୍ମାନ ଦେଖାଇଥିଲେ । ଗୋଖେଲ ଦକ୍ଷିଣ ଅଫ୍ରିକାରେ ଚାରିଆଡ଼େ ବୁଲି ଉଭୟ ପକ୍ଷର ମତାମତ ଜାଣି ପାରିଲେ । କର୍ତ୍ତୃପକ୍ଷଙ୍କ ସହିତ ସାକ୍ଷାତ୍ କରି ସେ ସ୍ଥିର କଲେ ଯେ, ଭାରତବାସିମାନଙ୍କୁ ଯେଉଁ ୩ ପାଉଣ୍ଡ ଅର୍ଥାତ୍ ୪୫ ଟଙ୍କା କର ପ୍ରତିଜଣକୁ ପ୍ରତିବର୍ଷ ଦେବାକୁ ଦେବାକୁ ପଡ଼ୁଅଛି, ତାହା ସରକାର ଉଠାଇ ଦେବେ । ଏହା ଛଡ଼ା ଆହୁରି ମଧ୍ୟ ଅନେକ ଅସୁବିଧା ଦୂର କରି ଦେବେ । ଦକ୍ଷିଣ ଅଫ୍ରିକାର ସରକାର ଏଥିରେ ସମ୍ମତି ଦେଲାରୁ ଗୋଖେଲ ତାହା ଭାରତବାସିମାନଙ୍କୁ ଶୁଣାଇ ଦେଇ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ଫଳରେ ପୁଣି କିଛି ସମୟ ଦକ୍ଷିଣ ଅଫ୍ରିକାରେ ଶାନ୍ତି ସ୍ଥାପିତ ହେଲା । ଭାରତବାସିମାନେ ପୁନର୍ବାର ସତ୍ୟାଗ୍ରହ ଆରମ୍ଭ କରିବାକୁ ଯାହା ବସିଥିଲେ, ତାହା ନ କରି କଷ୍ଟାଦ୍ଦନପାଇଁ ସରକାରଙ୍କ କଥାରେ ବିଶ୍ୱାସ ରଖି ଫଳାଫଳ ପ୍ରତି ଚାହିଁ ରହିଲେ ।

ଭାରତବାସିମାନେ ଏହିପରି ଶୁଭଫଳକୁ ପ୍ରତୀକ୍ଷା କରି ଚାହିଁ ବସିଥିବା ବେଳେ ସେମାନଙ୍କର ଆପତ୍ତି ଶୁଣାଯିବା ପରିବର୍ତ୍ତରେ ସେମାନଙ୍କ ଉପରେ ଆହୁରି ଗୋଟିଏ ବଜ୍ରପାତ ହେଲା । ୧୯୧୩ ଖ୍ରୀଷ୍ଟାବ୍ଦରେ ସମ୍ମିଳିତ ସରକାର

ଗୋଟିଏ ନୂତନ ଅଇନ, ଅଗତ କଲେ । ଏହି ଆଇନର ମର୍ମ ଏହି ଯେ, ଭାରତବାସିମାନଙ୍କର ବିବାହପ୍ରଣାଳୀ ନିୟମାନୁମୋଦିତ ନୁହେ । ଭାରତବାସୀମାନେ ସେମାନଙ୍କ ସାମାଜିକ ନିୟମାନୁସାରେ ଯେଉଁମାନଙ୍କୁ ବିବାହ କରିଅଛନ୍ତି, ସେମାନଙ୍କୁ ଦକ୍ଷିଣ ଅଫ୍ରିକାର ସରକାର ରକ୍ଷିତା ସ୍ତ୍ରୀ ବୋଲି ମନେ କରିବେ । ସେମାନଙ୍କର ସନ୍ତାନ ସନ୍ତତିମାନେ ସେମାନଙ୍କର ଉତ୍ତରାଧିକାରୀରୂପେ ସମ୍ପତ୍ତିର ଅଧିକାରୀ ହୋଇ ପାରିବେ ନାହିଁ । ଏହିପରି ଏକ ନିୟମ ଜାରି କରିବାର ଉଦ୍ଦେଶ୍ୟ କଣ ? କୌଣସିପ୍ରକାରେ ଭାରତବାସିମାନଙ୍କୁ ବିବ୍ରତ କରି ଦକ୍ଷିଣ ଆଫ୍ରିକାରୁ ତଡିଦେବା ଛଡ଼ା ଏହାର ଆଉ କି ଉଦ୍ଦେଶ୍ୟ ହୋଇ ପାରେ ? କିନ୍ତୁ ସେମାନେ ନାନାପ୍ରକାର ଗୃଲାକି ଦେଖାଇଲେ ମଧ୍ୟ ଭାରତବାସିମାନେ ଅଉ ସେଥି ପ୍ରତି ଭ୍ରୂକ୍ଷେପ ନ କରି, ନିଜ କର୍ତ୍ତବ୍ୟ ସାଧନରେ ତତ୍ପର । ସେମାନେ କେତେ ଆଶା ପୋଷିଥିଲେ । ଗୋଖଲେଙ୍କ ନିକଟରେ ସରକାର ଯେଉଁ ପ୍ରତିଜ୍ଞା କରିଥିଲେ, ତାହା କୁଆଡ଼େ ଉଡିଗଲା । ସେମାନଙ୍କର ବିଶ୍ୱାସ ଏକାବେଳକେ ଉଠିଗଲା । ସରକାର କହିଥିଲେ ଯେ, ୪୫ଟଙ୍କା କରଟି ଉଠାଇ ଦେବେ । ଯେଉଁ ନୂତନ ଆଇନ ଜାରି ହେଲା, ତହିଁରେ ଏତିକି ମାତ୍ର ହେଲା ଯେ, କେବଳ ଭାରତୀୟ ମହିଳାମାନେ ଏହି କରରୁ ମୁକ୍ତି ପାଇବେ । ଏହା ହେଲା ସତ୍ୟ, କିନ୍ତୁ ଏହି ଆଇନ ଅନୁସାରେ ମହିଳାମାନଙ୍କୁ ପ୍ରତିବର୍ଷ ନୂତନ ଛାଡ଼ପତ୍ର ଗ୍ରହଣ କରିବାକୁ ହେବ । ଏହି ଅପମାନକୁ ଚୁପ କରି ସହ୍ୟ କରିବା ଅସମ୍ଭବ । ଏହାର ତୀବ୍ର ଆନ୍ଦୋଳନ ଚାଲିଲା । ଏପରି କି, ଭାରତୀୟ ମହିଳାମାନେ ମଧ୍ୟ ଏହାର ବିରୁଦ୍ଧରେ ଦଣ୍ଡାୟମାନ ହେଲେ ।

ଏଣେ ଗୋଖଲେଙ୍କ ନିକଟକୁ ଖବର ଗଲା । ସରକାରଙ୍କ ସହିତ ତାହାଙ୍କର କି କଥା ହୋଇଥିଲା, ସେ କଣ ମହିଳାମାନଙ୍କୁ ଏହି କରରୁ ମୁକ୍ତ କରିବାର କଥା କହିଥିଲେ, ନା ଭାରତବାସୀ ମାତ୍ରକେ ସମସ୍ତେ ଏଥିରୁ ମୁକ୍ତ ପାଇବେ ? ସରକାର ଏକାବେଳେକେ ଏହି କର ଉଠାଇ-

ଦେବେ ବୋଲି ପ୍ରତିଶ୍ରୁତ ହୋଇଥିଲେ, ଗୋଖଲେଙ୍କ ନିକଟରୁ ଏହି ମର୍ମରେ ପତ୍ର ଆସିଲା । ଗୋଖଲେଙ୍କ ନିକଟରୁ ଏହି ଉତ୍ତର ପାଇ ମହାତ୍ମା ଗାନ୍ଧୀ ତୁମୁଳ ଆନ୍ଦୋଳନ ଲଗାଇ ଦେଲେ । ଭାରତବାସିମାନେ ସରକାରଙ୍କର ଏପରି ବିଶ୍ୱାସଘାତକତାରେ ଅତ୍ୟନ୍ତ ଉତ୍ତେଜିତ ହୋଇ ଉଠିଲେ । ସମସ୍ତ ଦକ୍ଷିଣ ଆଫ୍ରିକାରେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତପର୍ଯ୍ୟନ୍ତ ଗୋଟିଏ ଚହଳ ପଡ଼ିଗଲା । ଏହି ଆନ୍ଦୋଳନରେ ସରକାର ଟିକିଏ ବିଚଳିତ ହେଲେ ସତ୍ୟ, ମାତ୍ର ସେଥି ପ୍ରତି ଭ୍ରୁକ୍ଷେପ ନ କରି ଆଇନଟିକୁ ଜାରି କରିଦେଲେ । ଏହାର ଆନ୍ଦୋଳନ ମଧ୍ୟ ବିଲାତରେ ହେଲା । ମହାତ୍ମା ଗାନ୍ଧୀ ବିଲାତକୁ ଲୋକ ପଠାଇ ସେଠାରେ ମଧ୍ୟ ଏହାର ଘୋର ପ୍ରତିବାଦ କରିଥିଲେ । କିନ୍ତୁ କାହିଁରେ କିଛି ଫଳ ହେଲା ନାହିଁ । ସରକାର ତାଙ୍କର ମନମୁତାବକ ଆଇନଟିକୁ ଜାରି କରିଦେଲେ ।

ଏହିପରି ନାନାପ୍ରକାର ଚେଷ୍ଟା କରି କୌଣସି ଫଳ ନ ହେବାରୁ ଭାରତବାସିମାନେ ପୁଣି ଦ୍ୱିଗୁଣିତ ଉତ୍ସାହରେ ସତ୍ୟାଗ୍ରହ ଲଢ଼େଇ ଆରମ୍ଭ କରିଦେଲେ । ସଙ୍ଗେ ସଙ୍ଗେ ଗୋଟିଏ ଘୋଷଣାପତ୍ର ପ୍ରଚ୍ଛରିତ ହେଲା । ପତ୍ରର ମର୍ମ ଏହି ଯେ, (୧) ୪୫ ଟଙ୍କା କରଟି ଉଠାଇ ଦିଆଯାଉ, (୨) ଜାତି, ଦେଶ ଓ କଳାଧଳା ବର୍ଣ୍ଣବିଚ୍ଛାର କିଛି ନ ରହୁ, (୩) ରେଜିଷ୍ଟ୍ରି ଆଇନ ରଦ କରାଯାଉ, (୪) ଭାରତୀୟ ବିବାହପ୍ରଥା ଆଇନ ଅନୁମୋଦିତ ହେଉ । ଏ ସମସ୍ତ ଯେପର୍ଯ୍ୟନ୍ତ କାର୍ଯ୍ୟରେ ପରିଣତ ହୋଇ ନାହିଁ, ଯେ ପର୍ଯ୍ୟନ୍ତ ଅନ୍ୟାନ୍ୟ କ୍ଷେତ୍ରରେ ଭାରତବାସିମାନଙ୍କ ପ୍ରତି ନ୍ୟାୟ ବିଚ୍ଛାର କରା ହୋଇ ନାହିଁ, ସେପର୍ଯ୍ୟନ୍ତ ଭାରତବାସିମାନେ ଅଦମ୍ୟ ଉତ୍ସାହରେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇବେ । ସେମାନେ ଆଉ ସରକାରଙ୍କର ବିଭୀଷିକାରେ ନିଜର କର୍ତ୍ତବ୍ୟ ଭୁଲିବେ ନାହିଁ । ଭାରତୀୟମାନଙ୍କର ଓ ଭାରତୀୟ ନାରୀମାନଙ୍କର ମର୍ଯ୍ୟାଦା ରକ୍ଷା କରିବା ସକାଶେ ପୁନର୍ବାର ଦକ୍ଷିଣ ଆଫ୍ରିକାର ପ୍ରବାସୀ ଭାରତବାସିମାନେ ବଦ୍ଧପରିକର ହେଲେ ।

ବର୍ତ୍ତମାନ ଦକ୍ଷିଣଆଫ୍ରିକାର ନିୟମମାନ ଉପରେ ସରକାରଙ୍କଦ୍ୱାରା ବାରମ୍ବାର ଅନୁମୋଦିତ ହୋଇ ଭାରତବାସିମାନଙ୍କର ଅନିଷ୍ଟ ସାଧିତ ହେଲା, ତାହା ଟିକିଏ ପାଠକେ ବିଚାର କରି ଦେଖନ୍ତୁ । ମହାତ୍ମା ଗାନ୍ଧୀଙ୍କ ପରି ଜଣେ ନେତା ସେଠାରେ ନ ଥିଲେ, ଭାରତବାସିମାନଙ୍କର ଅବସ୍ଥା ଓଯେ କଣ ହୋଇଥାନ୍ତା, ତାହା ବର୍ଣ୍ଣନା କରାଯାଇ ପାରେ ନାହିଁ । ବିଶେଷତଃ ବର୍ତ୍ତମାନ କ୍ଷେତ୍ରରେ ଶ୍ୱେତାଙ୍ଗ ଓ ଭାରତବାସୀ ଉଭୟଙ୍କ ମଧ୍ୟରେ ଘୋର ବିଦ୍ରୋହ ଉପସ୍ଥିତ ହୋଇଥାନ୍ତା, ଶ୍ୱେତାଙ୍ଗମାନେ ତ ସର୍ବଦା ବିଦ୍ରୋହକୁ ଚାହିଁ ବସିଲପରି ବସିଥାନ୍ତି । ଟିକିଏ ସୁବିଧା ପାଇଲେ ସେମାନେ ଭାରତବାସି-ମାନଙ୍କର ଏକାବେଳେକେ ଦଫା ରଫା କରିଦେବେ । ଆମ ଦେଶରେ ଗୋଟିଏ ପ୍ରବାଦ ଅଛି—"ଅରକ୍ଷିତଙ୍କୁ ଦୈବ ସାହା ।" ସେହିପରି ଆଜି ନିରାଶ୍ରୟ ଭାରତବାସିମାନଙ୍କର ଦୈବ ସାହା ହୋଇ ମହାତ୍ମା ଗାନ୍ଧୀଙ୍କୁ ସେମାନଙ୍କର ନେତାପଦରେ ନିଯୁକ୍ତ କରିଅଛନ୍ତି । ଅଜି ତାହାଙ୍କର ଇଙ୍ଗିତରେ ଭାରତବାସିମାନେ, କି ପୁରୁଷ କି ସ୍ତ୍ରୀ, ସମସ୍ତେ ନିରୂପଦ୍ରବ ପ୍ରତିରୋଧ ବା ସତ୍ୟାଗ୍ରହର ବୈଜୟନ୍ତୀ ଉଡ଼ାଇ ସେହି ସୁଦୂର ପ୍ରଦେଶରେ ଶାନ୍ତି ସ୍ଥାପନ କରିବାକୁ ଦୃଢ଼ସଂକଳ୍ପ । ସେମାନଙ୍କର ଅଟଳ ପ୍ରତିଜ୍ଞା ଓ ସ୍ୱାର୍ଥତ୍ୟାଗ ଶତ୍ରୁର ହୃଦୟକୁ ମଧ୍ୟ କ୍ଷଣକପାଇଁ ଦ୍ରବୀଭୂତ କରି ଦେଉଅଛି । ମହାତ୍ମା ଗାନ୍ଧୀଙ୍କର ସଞ୍ଜୀବନ ମନ୍ତ୍ରରେ ମୃତ ଶରୀରରେ ଜୀବନ ଖେଳିଗଲାପରି କଳକାରଖାନା ପ୍ରଭୃତିରେ କାମ କରୁଥିବା ଭାରତୀୟ କୁଲିମାନଙ୍କ ହୃଦୟରେ ଜାତୀୟ ଜୀବନର ଢେଉ ଖେଳିଯାଇଅଛି । ସେମାନେ ମଧ୍ୟ ଆଜି ଜାତୀୟ ଗୌରବ ଓ ମାନ ମର୍ଯ୍ୟାଦା ରକ୍ଷା କରିବାକୁ ଦୃଢ଼ ପଣ କରି-ଅଛନ୍ତି ।

ପୂର୍ବେ ଉଲ୍ଲେଖ ହୋଇଅଛି ଯେ, ଭାରତୀୟ ନାରୀମାନେ ମଧ୍ୟ ସରକାରଙ୍କର ଏହି ବ୍ୟବହାରରେ ମର୍ମାହତ ହୋଇ ଟିକିଏ ଜାଗ୍ରତ ହୋଇଅଛନ୍ତି । ଅତ୍ୟାଚାର ଓ ଅନ୍ୟାୟଦ୍ୱାରା ଜଗତରେ ଯେଉଁ ଗୋଟିଏ

ଗୋଟିଏ ଶକ୍ତି ସମୟେ ସମୟେ ଉଦ୍ଭୂତ ହୁଏ, ତାହା ସାମାନ୍ୟ ନୁହେ । ଲୁହା ମାଟି ଭିତରେ ମାଟି ହୋଇ ପଡ଼ି ରହିଥାଏ । କିନ୍ତୁ ସେହି ଲୁହା ଯେପରି କମାରଶାଳରେ ଥରକୁ ଥର ପୋଡ଼ା ହୋଇ, କମାର ହାତରେ ଜୋରସ ମାଡ଼ ଖାଇ ଇସ୍ପାତରେ ପରିଣତ ହୁଏ, ମନୁଷ୍ୟ ଉପରେ ଟିକିଏ ମାଡ଼ ନ ବସିଲେ ତାହାର ନିଦ ଭାଙ୍ଗେ ନାହିଁ । ଆଜ ଦକ୍ଷିଣ ଅଫ୍ରିକାରେ ସେଇଟା ଘଟିଅଛି । ଯେଉଁଦିନ ଦକ୍ଷିଣ ଅଫ୍ରିକାର ବଡ଼ଲାଟମୃରେ ଭାରତୀୟ ନାରୀର ପତ୍ନୀତ୍ୱ ଓ ଧର୍ମସଙ୍ଗତ ଅଧିକାର ଆଇନର ଦୃଷ୍ଟିରେ ଅସଙ୍ଗତ ବୋଲି ବିବେଚିତ ହେଲା, ସେହିଦିନ ସେହି ସୁଦୂର ଦେଶରେ ପୁନର୍ବାର ଭାରତୀୟ ନାରୀଶକ୍ତି ବିକଶିତ ହୋଇ ଉଠିଲା । ପ୍ରାଚୀନ ଭାରତର ଇତିବୃତ୍ତରେ ଲେଖା ଅଛି ଯେ, ଭାରତୀୟ ନାରୀଗଣ ଦେଶ ଓ ଜାତିର ଗୌରବ ରକ୍ଷା କରିବା ସକାଶେ ଅକାତରେ ସମସ୍ତ ତ୍ୟାଗ କରି ନିଜର ଜୀବନ ପର୍ଯ୍ୟନ୍ତ ଦାନ କରୁଥିଲେ । ଆଜ ଦକ୍ଷିଣ ଅଫ୍ରିକାରେ ତାହାହିଁ ପ୍ରତ୍ୟକ୍ଷରେ ଘଟୁଅଛି । ସେଠାର ଭାରତୀୟ ନାରୀମାନେ ନିଜର ଅଧିକାର, ତଥା ଜାତି ଓ ଦେଶର ଗୌରବ ରକ୍ଷା କରିବାପାଇଁ କାରାଗାରକୁ ଯିବାକୁ ପ୍ରସ୍ତୁତ । ସେମାନେ ସ୍ଥାନେ ସ୍ଥାନେ ନାରୀସଙ୍ଘ ଗଠିତ କରି ପୁରୁଷମାନଙ୍କ ସହ ଏହି ଲଢ଼ାଇରେ ଯୋଗ ଦେବାକୁ ଉଦ୍ୟତ ।

ସ୍ଥାନେ ସ୍ଥାନେ ନାରୀସଙ୍ଘ ପ୍ରତିଷ୍ଠିତ ହେଲା । ନେଟାଲ, ଜୋହାନ୍ସବର୍ଗ ପ୍ରଭୃତି କେତେକ ସ୍ଥାନର ନାରୀମାନେ ସତ୍ୟାଗ୍ରହ ଲଢ଼ାଇରେ ଅତ୍ୟନ୍ତ ଉତ୍ସାହର ସହିତ ଯୋଗ ଦେଲେ । ନାରୀମାନଙ୍କ ନିକଟରୁ ଏହିପରି ଉତ୍ସାହ ପାଇ ପୁରୁଷଗଣ ମଧ୍ୟ ଦ୍ୱିଗୁଣ ଉତ୍ସାହରେ ଶାନ୍ତିପ୍ରଦ ଲଢ଼ାଇରେ ଯୋଗ ଦେଲେ । ଭାରତୀୟ ନାରୀଗଣ ଦଳବଦ୍ଧ ହୋଇ ଜୟପତାକା ଧରି ଶୋଭା-ଯାତ୍ରା କରି ବୁଲିବାକୁ ଆରମ୍ଭ କଲେ । ନେଟାଲ ନାମକ ସ୍ଥାନରୁ ଯେଉଁ ନାରୀଦଳ ଏହିପରି ପ୍ରଚାର କାର୍ଯ୍ୟ କରି ଆସୁଥିଲେ, ସେମାନେ ବାଲକଷ୍ଟ ନାମକ ଗୋଟିଏ ସ୍ଥାନରେ ଉପସ୍ଥିତ ହେଲା ମାତ୍ରକେ ଧରା ହୋଇଥିଲେ ।

ଏମାନଙ୍କ ମଧ୍ୟରେ ଅନେକ ଭଦ୍ରମହିଳା ଓ ସଂଗଭ୍ରସମ୍ପନ୍ନ ଘରର କନ୍ୟା ଓ ସ୍ତ୍ରୀ ଥିଲେ । ସେମାନେ ଧରା ହୋଇ ଛଅ ଛଅ ମାସ କାରାବାସ ଦଣ୍ଡ ଭୋଗ କଲେ । କିନ୍ତୁ କାରାଗାର ବର୍ତ୍ତମାନ ସେମାନଙ୍କର ମୁକ୍ତିର ଦ୍ୱାର । ତାହାକୁ ସେମାନେ ଭୟ କରିବା ଦୂରେ ଥାଉ ବରଂ କାରାବାସ ଦଣ୍ଡରେ ସେମାନେ ଅଧିକ ମାତି ଉଠିଲେ । ସେମାନେ ଯାଇଁ କଲକାରଖାନାରେ କାର୍ଯ୍ୟ କରୁଥିବା କୁଲିମାନଙ୍କୁ ଉତ୍ସାହିତ କରିବାକୁ ଲାଗିଲେ । ସେମାନେ ପୁରୁଷମାନଙ୍କୁ ଲକ୍ଷ୍ୟ କରି ପ୍ରଚାର କରୁଥିଲେ—ଏହିପରି ଗୋଲାମପରି ଜୀବନ ଅତିବାହିତ କରିବା ଅପେକ୍ଷା ମୃତ୍ୟୁକୁ ଆଲିଙ୍ଗନ କରିବା ଶ୍ରେୟ । ତୁମ୍ଭେମାନେ ବର୍ତ୍ତମାନ ଏ ସବୁ କାର୍ଯ୍ୟ ଛାଡ଼ିଦିଅ; ନିଜକୁ ଗୋଲାମି ଦେଇରୁ ମୁକ୍ତ କର । ପ୍ରତିଜ୍ଞା କର, ଯେତେଦିନ ପର୍ଯ୍ୟନ୍ତ ୪୫ ଟଙ୍କା କର ଉଠିଯାଇ ନାହିଁ, ସେତେଦିନ ପର୍ଯ୍ୟନ୍ତ ଆଉ ତୁମ୍ଭେମାନେ ଏହି କଲକାରଖାନାରେ କାର୍ଯ୍ୟ କରିବ ନାହିଁ । ମହିଳାମାନଙ୍କର ଏହିପରି ଉତ୍ସାହବାକ୍ୟରେ କାହାର ପ୍ରାଣ ବା ଜାଗ୍ରତ ନ ହେବ ? ଭାରତୀୟ ଶ୍ରମଜୀବିଗଣଙ୍କର ହୃଦୟ ତ ସର୍ବଦା ଦୁଃଖଜର୍ଜ୍ଜରିତ । ସେମାନେ ଏହିପ୍ରକାର ଉତ୍ସାହ ଓ ଉତ୍ତେଜନାର ବାଣୀ ଶୁଣିଲା ମାତ୍ରକେ ଉତ୍ସାହରେ ମାତି ଉଠିଲେ । ସମସ୍ତ ଦକ୍ଷିଣ ଆଫ୍ରିକାର କଲକାରଖାନାମାନଙ୍କରେ ହରତାଳ ହୋଇଗଲା । ଦକ୍ଷିଣ ଆଫ୍ରିକାର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସର୍ବତ୍ର ଏକ ଚହଲ ପଡ଼ିଗଲା । କଳ-କାରଖାନାର ମାଲିକମାନେ ଭୀତ ଓ ଚକିତ ହୋଇ ଉଠିଲେ । କାରଣ ଯଦି କଳକାରଖାନା ଓ ଖଣିମାନଙ୍କରେ କାର୍ଯ୍ୟ ବନ୍ଦ ହେବ, ସେମାନଙ୍କର ସର୍ବନାଶ ।

ଶ୍ୱେତାଙ୍ଗସମାଜରେ ଏକ ଆତଙ୍କ ଉପସ୍ଥିତ ହୋଇଗଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଥମେ ଭାରତୀୟ କୁଲିମାନଙ୍କର ରକ୍ତ ବନ୍ଦ ନ କରି ସେମାନେ ଗୋଟିଏ ସଭା କଲେ । ସେଠାକୁ ମହାତ୍ମା ଗାନ୍ଧୀଙ୍କୁ ନିମନ୍ତ୍ରଣ କଲେ । ମହାତ୍ମା ଗାନ୍ଧୀ ସେଠାରେ ଉପସ୍ଥିତ ହୋଇ ବୁଝାଇ ଦେଲେ ଯେ, ଶ୍ୱେତାଙ୍ଗ

ମାନେ ମୁଣ୍ଡ-କର ବନ୍ଦ ହେବା ବିରୁଦ୍ଧରେ ମତ ଦେଇଅଛନ୍ତି ବୋଲି କୁଲି-ମାନେ ହରତାଳ କରିଅଛନ୍ତି । ଏହି କର ବନ୍ଦ ନ ହେବା ପର୍ଯ୍ୟନ୍ତ ଏହି ଗୋଳମାଳର ମୀମାଂସା ହେବା ଅସମ୍ଭବ । ଏହି କରକୁ ଉଠାଇ ଦେବା ସକାଶେ ସରକାର ଗୋଖଲେଙ୍କ ନିକଟରେ ପ୍ରତିଶ୍ରୁତ ହୋଇଥିଲେ । କିନ୍ତୁ ଅଧିକାଂଶ ନେ ସେ ସବୁ ନ ବୁଝି ଏହାର ବିରୁଦ୍ଧରେ ମତ ଦେଇଅଛନ୍ତି । ବର୍ତ୍ତମାନ ଲୋକଙ୍କୁ କିଣ ବୁଝାଇ ମୁଁ ସେମାନଙ୍କୁ କାର୍ଯ୍ୟକୁ ପଠାଇ ପାରେଁ ? ଏହି କଥା ଶୁଣି ସତ୍ୟାଗ୍ରହୀ ନେତାଗଣମାନେ ସରକାର କର୍ତ୍ତୃପକ୍ଷଙ୍କ ନିକଟକୁ ତାର କରି ସମ୍ବାଦ ନେଲେ ଯେ, ସେମାନେ ଗୋଖଲେଙ୍କ ନିକଟରେ ଏହିପରି ପ୍ରତିଶ୍ରୁତ ହୋଇ-ଥିଲେ କି ନାହିଁ ? କିନ୍ତୁ କର୍ତ୍ତୃପକ୍ଷମାନେ ପ୍ରକାଶ୍ୟରେ ଏହିପରି ପ୍ରତିଶ୍ରୁତ ହୋଇଥିବାର ନାସ୍ତି କଲେ । କିନ୍ତୁ ଫିସର ସାହେବ ନାମକ ଜନୈକ ଉଚ୍ଚ-ପଦସ୍ଥ କର୍ମଚାରୀ ଗୋଖଲେଙ୍କ ସହି ମନ୍ତ୍ରିମାନଙ୍କର ପରାମର୍ଶ ହେଲା ବେଳେ ସେଠାରେ ଉପସ୍ଥିତ ଥିଲେ । ସେ ପ୍ରକାଶ୍ୟରେ ଏପରି ଗୋଟିଏ ମିଥ୍ୟା କହି ପାରିଲେ ନାହିଁ । ଏକ ଗୋଳମାଳ ଉପସ୍ଥିତ ହେଲା । କୌଣସି ପ୍ରକାରେ ତାହାର ମୀମାଂସା ହୋଇ ପାରିଲା ନାହିଁ । ଏଣେ ମାଲିକମାନେ ସରକାରଙ୍କ ପରାମର୍ଶ ଅନୁସାରେ ଶ୍ରମଜୀବିମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର ଆରମ୍ଭ କଲେ । ସେମାନଙ୍କର ଖୋରାକ ବନ୍ଦ କରି ଦିଆଗଲା । କେବଳ ଏତିକି ନୁହେ । ସ୍ଥାନେ ସ୍ଥାନେ ମଧ୍ୟ ସେମାନଙ୍କ ଉପରେ ଗୁଳି ଚଳାଇଥିଲା । ସେମାନଙ୍କୁ ନାନା ପ୍ରକାର ନିର୍ଯାତିତ କରା ଯାଇଥିଲା । ମାଲିକମାନଙ୍କର ଏପରି ଅତ୍ୟା-ଚାରରେ ଶ୍ରମଜୀବିମାନେ ଏକାବେଳକେ କଳକାରଖାନା ଓ ଖଣିମାନ ଛାଡି ବାହାରକୁ ବାହାରି ପଡ଼ିଲେ । ସେମାନଙ୍କ ଭିତରେ ଯେଉଁ ଜୀବନସ୍ରୋତ ପ୍ରବାହିତ ହୋଇଅଛି, ତାହାର ଗତିକୁ କିଏ ରୋଧ କରି ପାରେ ? ସେମାନଙ୍କ ଉପରେ ଅତ୍ୟାଚାର ଯେତେ ବେଶି ହେଲା, ସେମାନେ ସେତେ ମାତି ଉଠିଲେ ।

ବର୍ତ୍ତମାନ ସେମାନେ ଦଳ ଦଳ ହୋଇ ଆସି ମହାତ୍ମା ଗାନ୍ଧୀଙ୍କ ନିକଟରେ ଉପସ୍ଥିତ । ସେ ସେମାନଙ୍କର ଭାର ଗ୍ରହଣ କଲେ । ଗୋଟିଏ କମିଟି ଗଠିତ ହେଲା । ଯେତେ ଲୋକ ଏହିପରି କାର୍ଯ୍ୟ ଛାଡ଼ି ଦେଇ ଆସିଲେ, ସେମାନଙ୍କର ଆହାର ପାନର ବ୍ୟବସ୍ଥା ଭାର ଏହି କମିଟି ଉପରେ ନ୍ୟସ୍ତ ହେଲା । ଦେଖୁ ଦେଖୁ ଅଳ୍ପ ଦିନ ମଧ୍ୟରେ ହଜାର ହଜାର ଲୋକ ଆସି ଜମା ହୋଇ ପଡ଼ିଲେ । ସେମାନଙ୍କୁ ସୁବିଧାମତେ ଖାଦ୍ୟ ପେୟ ଯୋଗାଇବା ଅସମ୍ଭବ କହିଲେ ଚଳେ । ଏତେ ଲୋକଙ୍କପାଇଁ ମଧ୍ୟ ସାମଗ୍ରୀ ଏକତ୍ର କରିବା ଆହୁରି ଅସମ୍ଭବ । ରହିବା ସକାଶେ ସ୍ଥାନର ଅଭାବ । ଶ୍ରମଜୀବୀମାନେ ନିଜ ନିଜ ସ୍ଥାନ ଛାଡ଼ି ଚାଲି ଆସିଥିବା ସ୍ଥଳରେ ସେମାନଙ୍କ ସଙ୍ଗରେ ସେମାନଙ୍କର ସ୍ତ୍ରୀ ବାଳକ ଅଛନ୍ତି । ସେ ସମୟ ବର୍ଷାକାଳ । ଦିନ ରାତି ବାହାରେ ପଡ଼ି ରହିବାକୁ ପଡ଼ୁଅଛି । ଖାଇବା ପିଇବାର ସେତେ ସୁବିଧା ହୋଇ ପାରୁ ନାହିଁ । କେତେବେଳେ କାହାର କି ରୋଗ ହେଉଅଛି, ତାହାର ଠିକ ନାହିଁ । କିନ୍ତୁ ଏତେ ଦୁଃଖ କଷ୍ଟ ସହ୍ୟ କରିବାକୁ ପଡ଼ୁଥିଲେ ମଧ୍ୟ ଭାରତୀୟ କୁଲିମାନେ ସେ ସବୁ ପ୍ରତି ତିଳେ ମାତ୍ର ଭ୍ରୂକ୍ଷେପ ନ କରି ଅତ୍ୟନ୍ତ ଆନନ୍ଦସହକାରେ ଦୁଃଖକୁ ବରଣ କରି ନେଇଥିଲେ, ସେହି ଦୁଃସହ ଅବସ୍ଥାକୁ ସ୍ୱର୍ଗସୁଖ ବୋଲି ମନେ କରୁଥିଲେ । ମହାତ୍ମା ଗାନ୍ଧୀ ମଧ୍ୟ ନିଜ ହାତରେ ରାନ୍ଧି ବାଢ଼ି ଏହି ଲୋକମାନଙ୍କର ସେବା ଶୁଶ୍ରୂଷା କରୁଥିଲେ । ସେମାନଙ୍କ ସହ ସେହିପରିରେ ଯାହା କିଛି ମୁଠାଏ ଖାଇ ସଦାରେ ସଡ଼ି ରହୁଥିଲେ । ଏହି ସମୟର ଦୃଶ୍ୟ କିଏ ବର୍ଣ୍ଣନା କରି ପାରେ ? ପାଠକମାନେ କଳ୍ପନାଚକ୍ଷୁରେ ତାହା ବେଶ୍ ହୃଦୟଙ୍ଗମ କରି ପାରିବେ ।

ଏଣେ ଯେଉଁ ନାରୀମାନେ ପ୍ରଚାର କରି ବୁଲୁଥିଲେ, ସ୍ଥାନେ ସ୍ଥାନେ ସେମାନେ ଧରା ହୋଇ ଜେଲ ଗଲେ । ବିଶେଷ ଉଲ୍ଲେଖଯୋଗ୍ୟ ଏହି ଯେ, କେହି କେହି ନାରୀ ମଧ୍ୟ ସସନ୍ତାନାବସ୍ଥାରେ ଏହି କାର୍ଯ୍ୟ କରି ଜେଲ ଯାଇଥିଲେ । ଜେଲରେ ସେମାନଙ୍କ ପ୍ରତି ଅତି କଠୋର ବ୍ୟବହାର ହୋଉଥିଲା । ଏହି କଠୋର ବ୍ୟବହାରରେ ଗୋଟିଏ ଷୋଡ଼ଶ ବର୍ଷର ଯୁବତୀ ନାରୀ ମଧ୍ୟ

ପ୍ରାଣ ହରାଇଥିଲେ । ଦକ୍ଷିଣ ଆଫ୍ରିକାର ସତ୍ୟାଗ୍ରହ ଲଢ଼ାଇରେ ଏହି ୨୦ବର୍ଷର ଯୁବତୀ ନାରୀ ଅଜ ଭାରତବାସିଙ୍କର ଏକ ଆଦର୍ଶ ନାରୀ ହୋଇଅଛନ୍ତି । ଏହାଙ୍କର ଗୋଟିଏ ସ୍ମୃତିମନ୍ଦିର ସେଠାରେ ନିର୍ମିତ ହୋଇଅଛି । ଏହି ମନ୍ଦିରର ପ୍ରତିଷ୍ଠା ମହାତ୍ମା ଗାନ୍ଧୀ ସ୍ୱହସ୍ତରେ ସମ୍ପାଦନ କରିଥିଲେ । ଏହି ଚିରସ୍ମରଣୀୟା ମହିଳାଙ୍କର ପ୍ରାଣତ୍ୟାଗରେ ଲୋକେ ଅଧିକ ମାତି ଉଠିଥିଲେ । ଭାରତୀୟ ନାରୀମାନେ ଅତ୍ୟନ୍ତ ଉତ୍ତେଜିତା ହୋଇ ହସି ହସି କଠୋର କାରାବାସ ଦଣ୍ଡକୁ ଜୀବନର ପରମ ସୁଖ ବୋଲି ମନେ କରୁଥିଲେ । ଏହିପରି ଦକ୍ଷିଣ ଆଫ୍ରିକାର ବ୍ୟାପାର ଦିନକୁ ଦିନ ବଡ଼ ଗୁରୁତର ହୋଇ ଉଠିଲା । ଭାରତୀୟମାନଙ୍କର ଏତାଦୃଶ ଦେଶାତ୍ମମାନ ଓ ଆତ୍ମତ୍ୟାଗରେ ସମସ୍ତେ ଚକିତ ହୋଇ ଯାଇଥିଲେ । ଏହି ସବୁ ଦେଖିଲେ ପାଷାଣ ହେଲେ ମଧ୍ୟ ଟିକିଏ ତରଳିଯିବ । କିନ୍ତୁ ଦକ୍ଷିଣ ଆଫ୍ରିକାର ଯେଉଁମାନେ ମା ବାପ, ସେମାନଙ୍କ ହୃଦୟ ପାଷାଣଠାରୁ କଠିନ । ସେମାନଙ୍କର ଏଥିରେ ଚେତନା ଉଦୟ ହେଲା ନାହିଁ, ହୃଦୟ ମଧ୍ୟ ତରଳିଲା ନାହିଁ । ସମସ୍ତ ଜଗତର ଲୋକେ ହାହାକାର କରିବାକୁ ଲାଗିଲେ । ବିଲାତରେ ମଧ୍ୟ ଲୋକଙ୍କ ହୃଦୟରେ ଦୟା ଜାତ ହେଲା । ଭାରତର ଘରେ ଘରେ ଦକ୍ଷିଣ ଆଫ୍ରିକାରେ ବାସ କରୁଥିବା ଭାଇ ଭଉଣୀମାନଙ୍କର ଦୁଃଖକାହାଣୀ ପ୍ରଚାରିତ ହୋଇଗଲା । ଏହା ଶୁଣି କାହାର ଆଖିରୁ ଲୁହ ନ ବୋହୁଛି, ଏପରି ନାହିଁ । ନିଜ ନିଜ ସାମର୍ଥ୍ୟ ଅନୁସାରେ ସେତେବେଳେ ଲୋକେ ଦକ୍ଷିଣ ଆଫ୍ରିକାକୁ ସାହାଯ୍ୟ ପଠାଇଲେ ।

ଏତେ କାଣ୍ଡ ଘଟିଲା, ତଥାପି କର୍ତ୍ତାମାନଙ୍କର ଆଖି ଫିଟିଲା ନାହିଁ । ଦିନକୁ ଦିନ ଲୋକଙ୍କର ଦୁଃଖ, କଷ୍ଟର ସୀମା ରହିଲା ନାହିଁ । ୧୯୦୭ ଖ୍ରୀଷ୍ଟାବ୍ଦରୁ ଏହି ଲଢ଼ାଇ ଆରମ୍ଭ ହେଲାଣି । ବର୍ତ୍ତମାନ ୧୯୧୩ ମସିହା । ଏହି ଦୀର୍ଘକାଳ ରାତି ଦିନ ଅକାତରରେ କାର୍ଯ୍ୟ କରି ମହାତ୍ମା ଗାନ୍ଧୀ ମଧ୍ୟ ବଡ଼ ଦୁର୍ବଳ ହୋଇ ପଡ଼ିଲେଣି । ବର୍ତ୍ତମାନ ସେ ପଥର ଭିଖାରୀ କହିଲେ ଚଳେ । ଯାହା ତାହାଙ୍କର ଥିଲା ଏବଂ ନିଜେ ଯାହା ରୋଜଗାର କରିଥିଲେ,

ସେ ସମସ୍ତ ଦେଶକାର୍ଯ୍ୟରେ ବ୍ୟସ୍ତ କରି ସାରିଲେଣି । ଏହି ବାମରେ କେତେ ଲୋକ କେତେ ଅବସ୍ଥା ଯେ ଭୋଗିଲେଣି, ତାହା କିଏ କହି ପାରେ ? କେତେ ଲୋକ ମଲେଣି, କେତେ ଜେଲ ଭୋଗିଲେଣି, କାହାର କଣ ହେଲାଣି, ତାହାର ସ୍ଥିରତା ନାହିଁ । ବ୍ୟାପାର ଏତେଦୂରକୁ ଗଲେ ମଧ୍ୟ ମହାତ୍ମା ଗାନ୍ଧୀ ଥୟ ହେବାର ଲୋକ ନୁହନ୍ତି । ସେ ଯାହାକୁ ଧରିଅଛନ୍ତି, ତାହା କାର୍ଯ୍ୟରେ ପରିଣତ ନ ହେଲେ କଦାପି ଛାଡ଼ିବେ ନାହିଁ । ଆଜି ସେ ମରିବାକୁ ପ୍ରସ୍ତୁତ ଓ ତାହାଙ୍କ ସହ ଦକ୍ଷିଣ ଅଫ୍ରିକାର ଭାରତବାସିଗଣ ମଧ୍ୟ ମରିବାକୁ ପ୍ରସ୍ତୁତ । ଦକ୍ଷିଣ ଅଫ୍ରିକାରେ ଆଜି ଯାହା ଘଟୁଅଛି, ତାହା ଜଗତର ଇତିବୃତ୍ତରେ ଅମର୍ତ୍ତ୍ୟାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ମହାତ୍ମା ଗାନ୍ଧୀ ବର୍ତ୍ତମାନ ଦେଖିଲେ ଯେ, ଏତେ ଉଦ୍‌ଯୋଗ କରି ମଧ୍ୟ କାହିଁରେ କିଛି ଫଳ ହେଲା ନାହିଁ । ଶେଷରେ ସେ ସ୍ଥିର କଲେ ଯେ, ଏହିପରି ଭାବରେ ଜୀବନ ଯାପନ କରିବା ଅପେକ୍ଷା ସମସ୍ତେ ଯାଇ ଜେଲରେ ରହିବା ଶତଗୁଣରେ ଭଲ । ସରକାରଙ୍କ ସହ କଳହ କରିବାରେ କୌଣସି ପ୍ରୟୋଜନ ନାହିଁ । ଜଗତରେ ଅନ୍ୟାୟ ଓ ଅତ୍ୟାଚାର କଦାପି ଚିରଦିନ ରାଜତ୍ୱ କରିବ ନାହିଁ । ସୁତରାଂ ନିଷ୍ପତ୍ତି ହେଲା, ସମସ୍ତେ ଟ୍ରାନ୍ସଭାଲ ସୀମା ପାର ହୋଇ ଯିବେ । ସରକାରଙ୍କର ଗୋଟିଏ ନିୟମ ଅଛି ଯେ, ଏହି ଟ୍ରାନ୍ସଭାଲ ରାଜ୍ୟର ସୀମା ପାର ହୋଇଗଲେ ଭାରତବାସିମାନଙ୍କୁ କଠୋର ଶାସ୍ତି ମିଳିବ । ମହାତ୍ମା ଗାନ୍ଧୀ ସ୍ଥିର କଲେ ଯେ, ସେ ଏହି ନିୟମକୁ ଲଙ୍ଘନ କରି ଟ୍ରାନ୍ସଭାଲର ସୀମା ପାର ହୋଇ ଯିବେ । ଦକ୍ଷିଣ ଅଫ୍ରିକାର ସତ୍ୟାଗ୍ରହ ଲଢ଼ାଇରେ ଏହି ଟ୍ରାନ୍ସଭାଲ ସୀମା ପାର ହୋଇ ଯିବା ଗୋଟିଏ ଜଗଦ୍‌ବିଖ୍ୟାତ ଘଟଣା । ଜଗତର ଇତିହାସରେ ଏପରି ଘଟଣା ଏକାବେଳକେ ବିରଳ । ସହସ୍ର ସହସ୍ର ଲୋକ ସେମାନଙ୍କର ସ୍ତ୍ରୀ ସନ୍ତାନ ନେଇ ଜଣେ ନେତାଙ୍କର ଆଦେଶକୁ ଶିରୋଧାର୍ଯ୍ୟ କରି ମୃତ୍ୟୁକୁ ଆଲିଙ୍ଗନ କରିବାକୁ ଯାଉଅଛନ୍ତି, ଏହା ଜଗତର କେଉଁ ସ୍ଥଳରେ ବା ଘଟିଅଛି ? କୌଣସି ଦୁଇଗୋଟି ଜାତି ବା ଦେଶ ମଧ୍ୟରେ ଯୁଦ୍ଧ ଲାଗିଲେ

ପ୍ରକାଶ୍ୟରେ ଏହିପରି ସୀମା ପାର ହୋଇ ଯିବା ଘଟଣା ମଧ୍ୟ ଅସମ୍ଭବ ହୁଏ । କିନ୍ତୁ ଆଜି ନିରସ୍ତ୍ର ଓ ନିରସ୍ତ୍ର ଭାରତବାସୀ ଜଗତରେ ଯାହା ଅସମ୍ଭବ, ତାହାକୁ ସମ୍ଭବ କରିବାକୁ ଉଦ୍ୟତ ।

ସେ ଯାହାହେଉ ବର୍ତ୍ତମାନ ଟ୍ରାନ୍ସଭାଲର ସୀମା ପାର ହୋଇଯିବା ସକାଶେ ଆୟୋଜନ ଲାଗିଲା । ନ୍ୟୁକାସଲ ନାମକ ଗୋଟିଏ ସ୍ଥାନରେ ହଜାର ହଜାର ଭାରତବାସୀ ଏକତ୍ର ହେଲେ । ସ୍ଥିର ହେଲା ଯେ, ଯେପର୍ଯ୍ୟନ୍ତ ଧରା ହୋଇ ଜେଲକୁ ପ୍ରେରିତ ହୋଇ ନାହାନ୍ତି, ସେପର୍ଯ୍ୟନ୍ତ ଦିନରେ ୧୫ ମାଇଲ ଲେଖାଏ ଚାଲିବେ । ରାସ୍ତାରେ କିପରି ଭାବରେ କେଉଁଠାରେ ରହିବାକୁ ହେବ, ସରକାରୀ କର୍ମଚାରୀମାନଙ୍କ ସହ କିପରି ବ୍ୟବହାର କରିବାକୁ ହେବ, ଇତ୍ୟାଦି ଆବଶ୍ୟକ ବିଷୟରେ ମହାତ୍ମା ଗାନ୍ଧୀ ସେମାନଙ୍କୁ ନାନାପ୍ରକାର ଉପଦେଶ ଦେଇଥିଲେ । ଏଣେ ମଧ୍ୟ ସରକାରଙ୍କୁ ଏ ସବୁ ବିଷୟ ଯଥା ସମୟରେ ଜଣାଇ ଦିଆଗଲା । ସରକାରଙ୍କୁ ଜଣାଇବାର ଉଦ୍ଦେଶ୍ୟ ଏହି ଯେ, ମହାତ୍ମା ଗାନ୍ଧୀ ଗୁପ୍ତଭାବରେ କିଛି କରିବାକୁ ଇଚ୍ଛା କରନ୍ତି ନାହିଁ । ସେ ସବୁବେଳେ ସମ୍ମୁଖ ଯୁଦ୍ଧର ପକ୍ଷପାତୀ । ଏପରି କି, ସତ୍ୟାଗ୍ରହୀ ସେନା ରାସ୍ତାରେ କେଉଁ କେଉଁ ସ୍ଥାନରେ ରହିବେ, ସେହି ସେହି ସ୍ଥାନ ମଧ୍ୟ ସରକାରଙ୍କୁ ଜଣାଇ ଦିଆଗଲା । ଏହିପରି ସବୁ ଆୟୋଜନ ହେଉଥିବା ସ୍ଥଳେ ସରକାର ନୀରବ । କେତେଜଣ ସରକାରୀ କର୍ମଚାରୀ ଆସି ଲୋକମାନଙ୍କୁ କଳ କାରଖାନାକୁ ଯାଇ କାମ କରିବାକୁ କହିଥିଲେ । ଲୋକେ ସେମାନଙ୍କର କଥା ନ ଶୁଣିବାରୁ ଅନେକେ ଧରା ହୋଇ ଜେଲକୁ ପ୍ରେରିତ ହେଲେ । ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହେଲା । ମହାତ୍ମା ଗାନ୍ଧୀ ସତ୍ୟାଗ୍ରହର ବିରାଟବାହିନୀକୁ ପରିଚାଳିତ କରି ଟ୍ରାନ୍ସଭାଲ ଅଭିମୁଖରେ ଯାତ୍ରା କଲେ । ଆଜି ସେ ଦେଶ ଜୟ କରିବାପାଇଁ ଟ୍ରାନ୍ସଭାଲ ଭିତରକୁ ପ୍ରବେଶ କରୁ ନାହାନ୍ତି । ଅନ୍ୟାୟ ଓ ଅବିଚାରକୁ ଜୟ କରି ନ୍ୟାୟ ଓ ସୁବିଚାରକୁ ପ୍ରତିଷ୍ଠା କରିବାପାଇଁ ସହସ୍ର ସହସ୍ର ବ୍ୟକ୍ତିଙ୍କୁ ନେଇ ଟ୍ରାନ୍ସଭାଲରେ ପ୍ରବେଶ କରୁଅଛନ୍ତି । ଆଜି ସ୍ୱୟଂ

ଭଗବାନ୍ ସେମାନଙ୍କର ସାରଥି । ଅଟଳ ବିଶ୍ୱାସ ଓ ଦୁଃଖ କଷ୍ଟ ସହ୍ୟ କରିବାର ଶକ୍ତି ସେମାନଙ୍କର ପ୍ରଧାନ ଅସ୍ତ୍ର ।

ପ୍ରଥମ ଦିନ ସତ୍ୟାଗ୍ରହର ସିପାହୀମାନେ ଚାର୍ଲସଟାଉନ ନାମକ ଗୋଟିଏ ସ୍ଥାନରେ ଶିବିର ସ୍ଥାପନ କଲେ । ସେଠାରେ ଚାରିଆଡ଼ୁ ଅନେକ ଲୋକ ଆସି ଏକତ୍ରିତ ହୋଇଥିଲେ । ଧନୀ ଭାରତବାସିମାନେ ଏମାନଙ୍କର ଖାଦ୍ୟ ପେୟର ସମସ୍ତ ଆୟୋଜନ କରି ରଖିଥିଲେ । ଏହି ସମୟରେ ଭାରତବର୍ଷରେ ଲୋକମାନେ ମଧ୍ୟ ନୀରବ ନ ଥିଲେ । ଭାରତରୁ ବନ୍ଧୁ ଅର୍ଥ ଯାଇ ସେଠାରେ ଉପସ୍ଥିତ ହେଲା । ଏହିଠାରେ ମହାତ୍ମା ଗାନ୍ଧୀ ସମସ୍ତଙ୍କ ସହ ଏକ ସପ୍ତାହ ବାସ କରିଥିଲେ । ପୁନର୍ବାର ସରକାରଙ୍କୁ ନିଜର ଉଦ୍ଦେଶ୍ୟ ଜଣାଇ ଦେଲେ । ସରକାର ଏତେବେଳେ ସୁଦ୍ଧା ନୀରବ । ମହାତ୍ମା ଗାନ୍ଧୀ ଦେଖିଲେ ଯେ, ଆଉ ଅପେକ୍ଷା କରିବାରେ କୌଣସି ଫଳ ନାହିଁ । ସେମାନଙ୍କ ସଙ୍ଗରେ ଯେତେ ବାଳକ ବାଳିକା ଓ ସ୍ତ୍ରୀ ଥିଲେ, ସମସ୍ତଙ୍କୁ ଏହି ଚାର୍ଲସ-ଟାଉନରେ ରଖାଇଦେଇ ଅନ୍ୟାନ୍ୟମାନେ ସୀମାନ୍ତପ୍ରଦେଶ ଅଭିମୁଖେ ଅଗ୍ରସର ହେଲେ । ଏହି ଚାର୍ଲସ୍ଟାଉନରେ ଯେଉଁମାନଙ୍କୁ ରଖିଗଲେ, ସେମାନଙ୍କ ଭାର ମହାଶୟ କ୍ୟାଲନ୍‌ବେକଙ୍କ ଉପରେ ଅର୍ପିତ ହେଲା । ଏ ମହାଶୟ ଜଣେ କ ଜର୍ମାନବାସୀ ଏବଂ ମହାତ୍ମା ଗାନ୍ଧୀଙ୍କର ପ୍ରେମଭକ୍ତ ବନ୍ଧୁ ବୋଲି ଜଣେ । ଏହି ସତ୍ୟାଗ୍ରହ ଯୁଦ୍ଧରେ ସେ ମହାତ୍ମା ଗାନ୍ଧୀଙ୍କ ସହ ସମ୍ମିଳିତ ହୋଇ ସରକାରଙ୍କ ସଙ୍ଗେ ଲଢ଼ୁଅଛନ୍ତି । କେତେ ଥର ମଧ୍ୟ ଜେଲ ଗଲେଣି । ତାହାଙ୍କ ସଙ୍ଗରେ ତାହାଙ୍କ ସହଧର୍ମିଣୀ ମଧ୍ୟ ସହକର୍ମିଣୀ ହୋଇଅଛନ୍ତି ।

ଏଣେ ସୀମାନ୍ତ ପ୍ରଦେଶରେ ଉପସ୍ଥିତ ହେଲା ମାତ୍ରେ ସେମାନଙ୍କର ଗତିରୋଧ ହେଲା । ପ୍ରବେଶ ପଥରେ କେତେକ ଜଣ ପୋଲିସ୍ କର୍ମଚାରୀ ଠିଆ ହୋଇ ରହିଅଛନ୍ତି । ସେତେବେଳେ ମହାତ୍ମା ଗାନ୍ଧୀ କୌଣସି ବିଶେଷ ଅଯୋଜନ କରିବାପାଇଁ ପଛରେ ଥିଲେ । ଲୋକମାନଙ୍କର ଗତିରୋଧ

ଦେଖି ସେ ହଠାତ୍ ଅଟକୁ ଅସି ପୋଲିସମାନଙ୍କ ସହ ସାକ୍ଷାତ୍ କଲେ । ମହାତ୍ମା ଗାନ୍ଧୀ ପୋଲିସ୍ କର୍ମଚାରୀମାନଙ୍କ ସହ କଥୋପକଥନ କରୁଛନ୍ତି ଏହାପରେ ସମୟରେ ଯାତ୍ରୀଦଳ ପୋଲିସ୍‌କୁ ହଟାଇ ଦେଇ ଉଲ୍ଲଙ୍ଘନ କରି ଯିବା ଆରମ୍ଭ କଲେ । ସେଦିନ ପାମ୍‌ଫୋର୍ଡ ନାମକ ସ୍ଥାନରେ ଡେରା ପଡ଼ିଲା । ଏହିଠାରେ ମହାତ୍ମା ଗାନ୍ଧୀଙ୍କପାଇଁ ସ୍ୱତନ୍ତ୍ର ବନ୍ଦୋବସ୍ତ ହୋଇଥିଲା, କିନ୍ତୁ ସେ ଲୋକମାନଙ୍କୁ ଛାଡ଼ି ଅନ୍ୟତ୍ର ରହିବାପାଇଁ ସମ୍ମତ ହେଲେ ନାହିଁ । ତାହାଙ୍କର ଏହିପ୍ରକାର ବ୍ୟବହାରରେ ଲୋକେ ରାସ୍ତାର ସମସ୍ତ କ୍ଳେଶ ଭୁଲି ଯାଉଥିଲେ ଓ ଦୁଃଖ କଷ୍ଟକୁ ଆନନ୍ଦରେ ବରଣ କରୁଥିଲେ । ଶେଷରେ ମହାତ୍ମା ଗାନ୍ଧୀଙ୍କୁ ଧରିବାକୁ ଗୋଟିଏ ୱାରେଣ୍ଟ ଜାରି ହେଲା । ପୋଲିସ କର୍ମଚାରୀ ସେହି ୱାରେଣ୍ଟ ନେଇ ମହାତ୍ମା ଗାନ୍ଧୀଙ୍କ ନିକଟରେ ଆସି ଉପସ୍ଥିତ ହେଲେ । କିଛି ନ କହି ସେ ପୋଲିସ କର୍ମଚାରୀଙ୍କ ହସ୍ତରେ ନିଜକୁ ଅର୍ପଣ କରିଦେଲେ । ସେ ଧରା ହୋଇ ଗଲେ । କିନ୍ତୁ ସତ୍ୟାଗ୍ରହୀ ଦଳ ଏଥିରେ ନିରୁତ୍ସାହିତ ନ ହୋଇ ବରଂ ପ୍ରବଳତର ଉତ୍ସାହରେ ଗନ୍ତବ୍ୟ ମାର୍ଗରେ ଗତି କରିବାକୁ ଲାଗିଲେ । ମହାତ୍ମା ଗାନ୍ଧୀ ଧରା ହୋଇ ବିଚାରାଳୟରେ ଉପସ୍ଥିତ ହେଲେ । ତାହାଙ୍କ ନାମରେ ମକଦ୍ଦମା ଚାଲିଲା । ସହସ୍ର ସହସ୍ର ଲୋକ କେବଳ ତାହାଙ୍କ ଦ୍ୱାରା ପରିଚାଳିତ ହୋଇ ଯିବା କରୁଅଛନ୍ତି । ତାହାଙ୍କର ବିନା ଅନୁପସ୍ଥିତିରେ ସେମାନଙ୍କର ଦଶା କଣ ହେବ ! ଯଦି କିଛି ବିପଦ ଘଟେ, ସରକାର ସେଥିପାଇଁ ସମ୍ପୂର୍ଣ୍ଣ ଦାୟୀ । ମହାତ୍ମା ଗାନ୍ଧୀ ସରକାରଙ୍କୁ ଏହା ବୁଝାଇ ଦେଇ ଜାମିନରେ ତାହାଙ୍କୁ ଛାଡ଼ିଦେବାପାଇଁ ଅନୁରୋଧ କରିଥିଲେ । ଯାହାହେଉ, ସରକାର ତାହାଙ୍କୁ ଜାମିନରେ ଛାଡ଼ିଦେଲେ । ସେ ହଠାତ୍ ମଝିରେ ବାଟରେ ଅସି ଯାତ୍ରୀଦଳଙ୍କୁ ସହିତ ଯୋଗ ଦେଲେ ।

ସେତେବେଳକୁ ଯାତ୍ରୀଦଳ ଫାର୍ଡ୍‌ବାର୍ଥ ନାମକ ଗୋଟିଏ ସ୍ଥାନରେ ଅସି ପହଞ୍ଚିଅଛନ୍ତି । ମହାତ୍ମା ଗାନ୍ଧୀ ସେଠାରେ ସେମାନଙ୍କୁ ସହିତ ମିଳିତ ହେଲେ । ଅଜକୁ ୪।୫ ଦିନ ହେବ ଏହି ଯାତ୍ରୀଦଳ ଚାଲୁଅଛନ୍ତି । ଅନ-

ବରଡ ଚାଲି ଚାଲି ଅନେକଙ୍କ ଗୋଡ଼ରୁ ଛାଲ ଉଠି ଗଲାଣି । ତଥାପି କେହି କ୍ଳାନ୍ତ ନୁହନ୍ତି । ସମସ୍ତେ ଏକ ଲକ୍ଷ୍ୟରେ ଚାଲିଅଛନ୍ତି । ସେମାନଙ୍କର ଆନନ୍ଦର ସୀମା ନାହିଁ । ସ୍ଥାନେ ସ୍ଥାନେ ପୋଲିସ କର୍ମଚାରୀ ଆସି ସେମାନଙ୍କୁ କଳ-କାରଖାନାରେ ଯାଇ କାମ କରିବାକୁ ପ୍ରବର୍ତ୍ତାଉଅଛନ୍ତି । କିନ୍ତୁ ସେମାନେ ତାହା ନ ଶୁଣିବାରୁ କେହି କେହି ଧରା ହୋଇ ଜେଲକୁ ପ୍ରେରିତ ହେଉଅଛନ୍ତି । ପୁଣି ଆଉ ଥରେ ମହାତ୍ମା ଗାନ୍ଧୀ ଧରା ହେଲେ । ତାହାଙ୍କର ବିଚାର ଚାଲିଲାବେଳେ ସେ ଦୁଇବାର ଜାମିନରେ ଖଲାସ ପାଇବାକୁ ପ୍ରାର୍ଥୀ ହେଲେ । ବର୍ତ୍ତମାନ ସମସ୍ତ ସତ୍ୟାଗ୍ରହୀ ଯାତ୍ରିମାନେ ଅଦାଲତକୁ ଘେରିଗଲେ । ସେମାନେ କହିଲେ, ମହାତ୍ମା ଗାନ୍ଧୀଙ୍କୁ ଛାଡ଼ି ନ ଦେଲେ ସେମାନେ ସେଠାରୁ ହଟିବେ ନାହିଁ । ବିଚାରକର୍ତ୍ତା ଶେଷରେ ନିରୁପାୟ ହୋଇ ଗାନ୍ଧୀକୁ ଜାମିନ୍‌ରେ ଖଲାସ ଦେଇଥିଲେ ।

ଏହି ଘଟଣାର ଠିକ ପରଦିନ ମିଷ୍ଟର ପୋଲାକ ଆସି ମହାତ୍ମା ଗାନ୍ଧୀଙ୍କ ସହ ଯୋଗ ଦେଲେ । ଏହି ପୋଲାକ ମହାଶୟଙ୍କର ଘର ବିଲାତରେ । ସେ ଜଣେ ମଧ୍ୟ ଗାନ୍ଧୀଙ୍କର ସହକର୍ମୀ । ଉଭୟେ ଯାତ୍ରିଦଳଙ୍କ ସହ ଯାତ୍ରା କଲେ । ରାସ୍ତାରେ ଚାଲିଅଛନ୍ତି, ତାହାଙ୍କ ପଛରେ ସତ୍ୟାଗ୍ରହୀ ବାହିନୀ ମଧ୍ୟ ଚାଲିଅଛନ୍ତି, ନାନା ବିଷୟରେ ଆଳାପ ଚାଲିଅଛି । ଏପରି ସମୟରେ ଖଣ୍ଡିଏ ସରକାରୀ ମଟର ଗାଡ଼ି ଓ କେତେ ଜଣ ପୋଲିସ କର୍ମଚାରୀ ଆସି ଉପସ୍ଥିତ ହେଲେ । ଏହି ଗାଡ଼ିରେ ସୀମାପାର ନିୟମର କର୍ତ୍ତା ସ୍ୱୟଂ ଚ୍ୟାମଲେ ସାହେବ ଆସିଅଛନ୍ତି । ଗାନ୍ଧୀଙ୍କୁ ଜଣାଇଲେ ଯେ, ସେ ତାହାଙ୍କୁ ଧରିନେବାପାଇଁ ଆସିଅଛନ୍ତି । ମହାତ୍ମା ଗାନ୍ଧୀ କିଛି ନ କହି ଆତ୍ମସମର୍ପଣ କଲେ । ସରକାରୀ ଗାଡ଼ୀ ଖଣ୍ଡି ତାହାଙ୍କୁ ନେଇ ଅତି ଦ୍ରୁତ ବେଗରେ କୁଆଡ଼େ ଚାଲିଗଲା ।

ଯାତ୍ରିଦଳ କିନ୍ତୁ ଏଥିରେ ନିରସ୍ତ ହେଲେ ନାହିଁ । ସେ ପୂର୍ବବତ୍ ଅଗ୍ରସର ହେବାକୁ ଲାଗିଲେ । ବର୍ତ୍ତମାନ ପୋଲାକ ମହାଶୟ ସେମାନଙ୍କ ଭାର

ଗ୍ରହଣ କଲେ । ଦୁଇ ତିନି ଦିନ ପରେ ବାଲଫୋର ନାମକ ଗୋଟିଏ ସ୍ଥାନରେ ଦିନ ୯ଟା ସମୟରେ ସେମାନେ ଉପସ୍ଥିତ ହେଲେ । ଏହିଠାରେ ଉପସ୍ଥିତ ହୋଇ ପୋଲକ ମହାଶୟ ଦେଖିଲେ ଯେ, ୬ ଖଣ୍ଡି ଖାଲି ଟ୍ରେନ-ଗାଡ଼ି ରେଲ ଷ୍ଟେସନରେ ଠିଆ ହୋଇଅଛି । ଚ୍ୟାମ୍‌ନେ ସାହେବ କେତେଜଣ ପୋଲିସ କର୍ମଚାରୀ ସହ ଆସି ପୋଲକଙ୍କୁ ଜଣାଇଲେ ଯେ, ଏହି ୬ ଖଣ୍ଡି ଗାଡ଼ି ସରକାର ପଠାଇଅଛନ୍ତି । ଏହିଠାରେ ସମସ୍ତେ ଫୌଜଦାରୀ ଅପରାଧରେ ଧରା ହୋଇ ନେଟାଲ ପ୍ରେରିତ ହେବେ । ଏହି ସମ୍ବାଦ ଶୁଣି ପୋଲକ ମହାଶୟ ଅତ୍ୟନ୍ତ ଆନନ୍ଦିତ ହେଲେ । ଏତେଦିନ ପରେ ସେମାନଙ୍କର ଉଦ୍ଦେଶ୍ୟ ସିଦ୍ଧ ହେଲା । କିନ୍ତୁ ଯାତ୍ରୀଦଳରୁ କେହି କେହି ଟିକିଏ ଗୋଳମାଳ ଆରମ୍ଭ କଲେ । "ସେମାନେ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାତ୍ରା କରିବେ, ସରକାରଙ୍କ କଥା ମାନିବେ ନାହିଁ," ଏହା କହି ଅଗ୍ରସର ହେବାକୁ ଆରମ୍ଭ କଲେ । ସେମାନଙ୍କ କଥାରେ ଅନେକେ ମଧ୍ୟ ସେହି ପଥ ଅନୁସରଣ କଲେ । ଏହି ସମୟରେ ପୋଲକ ସେମାନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ସେମାନଙ୍କୁ ସମ୍ବୋଧନ କରି କହିଥିଲେ, "ତୁମ୍ଭମାନଙ୍କର ଗନ୍ତବ୍ୟସ୍ଥଳ କାରାଗାର, ତୁମ୍ଭେମାନେ ତାହା ଭୁଲି କୁଆଡ଼େ ଗତି କରୁଅଛ ?" ଏହି କଥା ଶୁଣିଲା ମାତ୍ରକେ ସମସ୍ତେ ଶାନ୍ତ ହେଲେ । ଏହି ସମୟରେ ମଧ୍ୟ ମହାତ୍ମା ଗାନ୍ଧୀଙ୍କ ନିକଟରୁ ତାର ଆସିଲା ଯେ, ସମସ୍ତେ ଯେପରି ନୀରବରେ ଆତ୍ମସମର୍ପଣ କରନ୍ତି । ତହୁଁ ସମସ୍ତେ ଯାଇ ନୀରବରେ ରେଲରେ ଚଢ଼ିଲେ । ପୋଲକ ମଧ୍ୟ ସେମାନଙ୍କ ସହ ଗାଡ଼ିରେ ଚଢ଼ିଲେ । କିନ୍ତୁ ସେ ଧରା ହୋଇ ନ ଥିଲେ ଶେଷରେ ଗ୍ରେଲିଙ୍ଗ୍ ଷ୍ଟେସନ ନିକଟରେ ଗାଡ଼ି ଆସି ଲାଗିଲା । ସରକାରଙ୍କର ଆଦେଶ ଅନୁସାରେ ପୋଲକ ସାହେବ ମଧ୍ୟ ଧରା ହେଲେ ।

ଏହିଠାରେ ଗାଡ଼ି ୮ଘଣ୍ଟା ପର୍ଯ୍ୟନ୍ତ ଠିଆ ହୋଇ ରହିଲା । ଲୋକମାନଙ୍କୁ ଖାଇବାକୁ କିଛି ଦେବାର ଦୂରେ ଥାଉ, ପିଇବାକୁ ଟୋପାଏ ପାଣି ପର୍ଯ୍ୟନ୍ତ ମିଳିଲା ନାହିଁ । କେତେକଙ୍କର ସ୍ତ୍ରୀ, ସନ୍ତାନ ଗାଡ଼ି ନିକଟକୁ ଆସି ଦେଖା

କରିବାକୁ ଚାହିଁଲେ, ତାହା ମଧ୍ୟ ହେଲା ନାହିଁ । ସଶସ୍ତ୍ର ପୁଲିସ ପ୍ରହରୀ ଦେଉଥାନ୍ତି । ଦୂରରେ ଯାତ୍ରିମାନଙ୍କର ଭାଇବନ୍ଧୁଗଣ ସେମାନଙ୍କୁ ଉତ୍ସାହବାଣୀ ଶୁଣାଉଥାନ୍ତି । ଯାତ୍ରୀମାନଙ୍କୁ ଯେତେ ଭୟ ଦେଖାଇଲେ ସୁଦ୍ଧା ସେମାନେ ଡରିବେ କାହିଁ ? ଭାଇ ବନ୍ଧୁଙ୍କ ସହ ଆଳାପ ହୋଇ ପାରିଲା ନାହିଁ, ଖାଇବାକୁ ପିଇବାକୁ କିଛି ମିଳିଲା ନାହିଁ ସତ୍ୟ, କିନ୍ତୁ ଏ ସବୁ ପ୍ରତି ସେମାନଙ୍କର ଭ୍ରୂକ୍ଷେପ ନାହିଁ । ସମୟ ଆସି ଉପସ୍ଥିତ ହେଲା । ଗାଡ଼ି ଷ୍ଟେସନ ଛାଡ଼ି ଗନ୍ତବ୍ୟସ୍ଥଳରେ ଧାବିତ ହେଲା । ଏହିପ୍ରକାରେ ସତ୍ୟାଗ୍ରହିମାନଙ୍କର ଯାତ୍ରା ଏହିଠାରେ ଶେଷ । ପୃଥିବୀର ଇତିହାସରେ ଏହି ଘଟଣାଟି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ଏହା ଭାରତବାସୀର ଗୌରବ ଓ ମହତ୍ତ୍ୱକୁ ଚିରକାଳ ନିମିତ୍ତ ଜଗତ ସମ୍ମୁଖରେ ପ୍ରଚାର କରୁଥିବ ।



## ଏକାଦଶ ଅଧ୍ୟାୟ ।

ମହାତ୍ମା ଗାନ୍ଧୀ ଧୃତ ହୋଇଅଛନ୍ତି, ଏହା ପାଠକମାନେ ପୂର୍ବ ଅଧ୍ୟାୟରେ ଜାଣିଅଛନ୍ତି । ତାହାଙ୍କର ସହଯାତ୍ରୀମାନେ ମଧ୍ୟ ଧୃତ ହୋଇଅଛନ୍ତି । ଏମାନଙ୍କର ବିଚାର ହେବା ପୂର୍ବରୁ ଏହି ଘଟଣାଟି ପୃଥିବୀର ଚତୁର୍ଦ୍ଦିଗରେ ବ୍ୟାପି ଗଲାଣି କହିଲେ ଚଳେ । ବିଲାତ, ଆମେରିକା ପ୍ରଭୃତି ଦେଶର ସମ୍ବାଦପତ୍ରମାନ ଏହି ବ୍ୟାପାରର ସ୍ତୁତି କରୁଅଛନ୍ତି । ମହାତ୍ମା ଗାନ୍ଧୀଙ୍କର କି ବିଚାର ହେବ, ସତ୍ୟାଗ୍ରହିମାନେ କି ଦଣ୍ଡ ପାଇବେ, ଏହା ଜାଣିବାପାଇଁ ସର୍ବେ ଲୋକେ ଉତ୍କଣ୍ଠିତ ହୋଇ ରହିଅଛନ୍ତି । ମହାତ୍ମା ଗାନ୍ଧୀଙ୍କର ଓ ତାହାଙ୍କ ସହଯାତ୍ରୀମାନଙ୍କର ବିଚାରର ସମୟ ଉପସ୍ଥିତ ହେଲା । ସେ ବିଚାରାଳୟରେ ଉପସ୍ଥିତ ହୋଇ କହିଥିଲେ ଯେ, ସେ ସରକାରଙ୍କ

ଲ୍ଲଙ୍ଘନ କରି ନାହାନ୍ତି, କି ଟ୍ରାନ୍‌ଭାଲ ପ୍ରଦେଶରେ ବାସ କରୁଥିବା ଲୋକମାନଙ୍କର ଅନିଷ୍ଟ ଇଚ୍ଛା କରି ସେ ଏପରି କାର୍ଯ୍ୟରେ ପ୍ରବୃତ୍ତ ହୋଇ ନାହାନ୍ତି । ଏପରି କାର୍ଯ୍ୟ କେତେ ଦାୟିତ୍ୱପୂର୍ଣ୍ଣ, ଏଥିରେ କି ବିପଦ ଅଛି, ଲୋକମାନଙ୍କୁ କି କ୍ଳେଶ ଭୋଗ କରିବାକୁ ହେବ, ଏହା ସେ ଭଲ କରି ଜାଣନ୍ତି । ତାହା ଜାଣି ଶୁଣି ସେ ଏପରି କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି । ଯେତେବେଳେ ଯାହା କରିଅଛନ୍ତି, ତାହା ମଧ୍ୟ ସରକାରଙ୍କୁ ଜଣାଇ କରିଅଛନ୍ତି । ବିଶେଷ ବିପଦର ଆଶଙ୍କା ନ ହେଲେ, ଅସହ୍ୟ ଯନ୍ତ୍ରଣା ଭୋଗ ନ କଲେ, ସରକାରଙ୍କର ଚୈତନ୍ୟ ଉଦୟ ହେବ ନାହିଁ; ଏହା ମଧ୍ୟ ସେ ଭଲରୂପେ ବୁଝିଅଛନ୍ତି । ସୁତରାଂ ଦେଶର ପ୍ରତିଷ୍ଠିତ ନିୟମକୁ ପ୍ରକାଶ୍ୟଭାବରେ ସେ ଲଙ୍ଘନ କରିଅଛନ୍ତି ଓ ଅନ୍ୟାନ୍ୟମାନଙ୍କୁ ଏହି ନିୟମକୁ ଲଙ୍ଘନ କରିବାକୁ ପ୍ରବର୍ତ୍ତାଇଅଛନ୍ତି । ଏ ଦିଗଭାବରେ ନିୟମକୁ ଲଙ୍ଘନ କଲେ ମଧ୍ୟ, ଯେଉଁମାନେ ନିୟମ ମାନି ଚଳୁଅଛନ୍ତି, ସେମାନେ ଯେଉଁ ଅଧିକାର ଭୋଗ କରୁଅଛନ୍ତି, ସେହି ସବୁ ଅଧିକାର ସେ ଗଭର୍ଣ୍ଣମେଣ୍ଟଙ୍କ ନିକଟରୁ ଦାବି କରୁଅଛନ୍ତି ।

ଏହି ଜବାବ ଯେ ବିଚାରକର୍ତ୍ତାଙ୍କ ମନକୁ ମାନିଥିବ, ଏହା ଆଶା କରିବା ବୃଥା । ଶେଷରେ ମହାତ୍ମା ଗାନ୍ଧୀଙ୍କୁ ୧୫ ମାସ କାରାବାସର ଦଣ୍ଡ ମିଳିଲା । ତାହାଙ୍କର ସହଯୋଗୀମାନେ ମଧ୍ୟ କଠୋର ଦଣ୍ଡ ଭୋଗ କଲେ । ଏହି ବ୍ୟାପାର ପରେ ଗୃହଆଡ଼େ ଅତି ଭୀଷଣ ଆନ୍ଦୋଳନ ଆରମ୍ଭ ହେଲା । ବିଲାତରେ ମଧ୍ୟ ଲୋକେ ଏହି ଆନ୍ଦୋଳନରେ ଏଥର ଯୋଗ ଦେଲେ । ଏଣେ ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କର ଜେଲ ଯିବା ସମ୍ବାଦ ବିଜୁଳିପରି କ୍ଷିପ୍ରଗତିରେ ଦେଶମୟ ବ୍ୟାପିଗଲା । ଗ୍ରାମେ ଗ୍ରାମେ ନଗରେ ନଗରେ ଏହାର ତୀବ୍ର ଆନ୍ଦୋଳନ ହେଲା । ଦକ୍ଷିଣ ଆଫ୍ରିକାର କଥା ବା କହିବା କଣ ? ସେଠାରେ ଯେ ଯେଉଁଠାରେ ଥିଲେ, ସମସ୍ତେ କାମ ଛାଡ଼ିଦେଲେ । ଯେଉଁ ଭାରତୀୟ କୁଲିମାନେ କୃଷିକାର୍ଯ୍ୟରେ ଲାଗିଥାନ୍ତି, ସେମାନେ ଏପର୍ଯ୍ୟନ୍ତ ଏହି

ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ, ବର୍ତ୍ତମାନ ସେମାନେ ମଧ୍ୟ କାମ ଛାଡ଼ିଦେଇ ବସିଲେ । ସେମାନେ କାମ ଛାଡ଼ି ଦେଲାରୁ ସେମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର ଆରମ୍ଭ ହେଲା । କେତେକ ଜାଗାରେ ସେମାନଙ୍କ ଉପରେ ଗୁଳି ଚାଲିଲା । ଅନେକେ ଗୁଳିରେ ମଲେ । ଯେଉଁମାନେ ମରିବାକୁ ପ୍ରସ୍ତୁତ, ସେମାନେ ମରଣକୁ ଡରିବେ କାହିଁ ? ସରକାର ଦେଖିଲେ, ଅବସ୍ଥା ବଡ଼ ବିଷମ । ଏଣେ ଭାରତ ସରକାରଙ୍କର ଆସନ ମଧ୍ୟ ଥରହର ହେଲା । ବିଲାତରେ ଗୋଟାଏ ବଡ଼ ଚହଳ ପଡ଼ିଗଲା । ଏହି ସମୟରେ ଭାରତର ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜ ସାହେବ ଦକ୍ଷିଣ ଅଫ୍ରିକାର ଭାରତବାସିମାନଙ୍କ ପାଇଁ ସେ ବହୁତ ଲଢ଼ିଥିଲେ, ଏହା ଆମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବ । ତାହାଙ୍କର ଚେଷ୍ଟାରେ ବିଲାତର ସରକାର ମଧ୍ୟ ଆହୁରି ବିକାଏ ବିଚଳିତ ହେଲେ । ଏହି ସବୁ ବ୍ୟାପାର ପରେ ଗୋଟିଏ କମିଶନ ବା ତଦନ୍ତ କମିଟି ନିଯୁକ୍ତ ହେଲା । ସେମାନେ ଦକ୍ଷିଣ ଅଫ୍ରିକାକୁ ଯାଇ ଭାରତବାସିଙ୍କର ସମସ୍ତ ବିଷୟ ତଦନ୍ତ କରିବେ । କିନ୍ତୁ କମିଶନଟି ଦକ୍ଷିଣ ଅଫ୍ରିକାର ସରକାର ଯେପରି ଭାବରେ ନିଯୁକ୍ତ କଲେ, ତାହା ଭାରତବାସିମାନଙ୍କର ମତର ଅନୁକୂଳ ହୋଇ ନ ଥିଲା । ତଥାପି ତଦନ୍ତ ପରେ କମିଶନ ଯେଉଁ ମନ୍ତବ୍ୟ ପ୍ରକାଶ କଲେ, ତାହା ଭାରତବାସିମାନଙ୍କର ମଙ୍ଗଳକର ହୋଇଥିଲା । ଦକ୍ଷିଣ ଅଫ୍ରିକାର ସମ୍ମିଳିତ ସରକାର ଗୋଟିଏ ନିୟମ ପାଶ୍ କଲେ । ଏହି ନିୟମଟିର ନାମ ହେଲା ଭାରତୀୟ ମୁକ୍ତିବିଧାନ (The Indian Relief Act) । ଏହି ଆଇନଟି ପାଶ୍ ହୋଇଗଲା ପରେ ଉକ୍ତ ୧୫ ଟଙ୍କା କର ଉଠିଗଲା । କଳା ଧଳାର ପାର୍ଥକ୍ୟ ଦୂର ହେଲା । ହିନ୍ଦୁ ମୁସଲମାନଙ୍କର ବିବାହ ରୀତି ସରକାର ମାନିବାକୁ ବାଧ୍ୟ ହେଲେ । ଏହିଠାରେ ଦକ୍ଷିଣ ଅଫ୍ରିକାର ସତ୍ୟାଗ୍ରହ ଯଜ୍ଞର ପୂର୍ଣ୍ଣାହୁତି ହେଲା । ଦକ୍ଷିଣ ଅଫ୍ରିକାରେ ଶାନ୍ତି ପ୍ରତିଷ୍ଠିତ ହେଲା । ଚାରିଆଡ଼େ ମହାତ୍ମା ଗାନ୍ଧୀଙ୍କର ଜୟଧ୍ୱନି ପଡ଼ିଗଲା ! ଦେଶ ବିଦେଶରେ ତାହାଙ୍କର ନାମ ପ୍ରଚାରିତ ହେଲା, ଏହା କହିବା ବାହୁଲ୍ୟ ମାତ୍ର ।

ମହାତ୍ମା ଗାନ୍ଧୀ ବର୍ତ୍ତମାନ ଭାବିଲେ ଯେ, ତାହାଙ୍କର କର୍ତ୍ତବ୍ୟ ଶେଷ ହୋଇଅଛି । ଦକ୍ଷିଣ ଆଫ୍ରିକାରେ ତାହାଙ୍କର ଆଉ ରହିବା ବିଶେଷ ପ୍ରୟୋଜନ ନାହିଁ । ସେ ସେଠାରୁ ବିଦାୟ ନେଇ ବିଲାତ ଯିବାକୁ ଆୟୋଜନ କଲେ । ସେତେବେଳକୁ ଦେଶପ୍ରାଣ ଗୋଖଲେ ବିଲାତରେ ଥାନ୍ତି । ତାହାଙ୍କର ଶରୀର ବଡ଼ ଅସୁସ୍ଥ ଥାଏ । ତାହାଙ୍କର ସେବା କରିବା ସକାଶେ ମହାତ୍ମା ଗାନ୍ଧୀ ବିଲାତ ଯାଉଅଛନ୍ତି । ପାଠକଗଣ ! ଏହିଠାରେ ସ୍ଥିର ରହି ଟିକିଏ ପଛକୁ ଚାହିଁ ଚିନ୍ତା କରନ୍ତୁ । କଣ ଦେଖୁଛନ୍ତି? ୧୮୯୩ ଖ୍ରୀଷ୍ଟାବ୍ଦର ସମୟ ସହିତ ବର୍ତ୍ତମାନ ସମୟର ଅବସ୍ଥା ଟିକିଏ ତୁଳନା କରନ୍ତୁ । ଗାନ୍ଧୀ ଦକ୍ଷିଣ ଆଫ୍ରିକାକୁ ଯେତେବେଳେ ପ୍ରଥମେ ଯାଇଥିଲେ, ସେ କିପରି ଭାବରେ ଯାଇଥିଲେ? ସେତେବେଳେ ସେ ଜଣେ ସାମାନ୍ୟ ବାରିଷ୍ଟରରୂପେ ସେଠାକୁ ଯାଇଥିଲେ । ସେତେବେଳେ ଲୋକେ ତାହାଙ୍କୁ ମିଷ୍ଟର ଗାନ୍ଧୀ ବୋଲି କହୁଥିଲେ । ନିକଟତମ ବନ୍ଧୁମାନେ ମୋହନଦାସ ବୋଲି ଡାକୁଥିଲେ । କିନ୍ତୁ ସେ ଆଉ ମିଷ୍ଟର ନୁହନ୍ତି । ସେ ଆଜି ମହାତ୍ମା, ଆଜି ତାହାଙ୍କର ମୋହନ ନାମ ସାର୍ଥକ ହୋଇଅଛି । ସେ ଜଗତକୁ ମୋହନମନ୍ତ୍ରରେ ଭୁଲାଇଅଛନ୍ତି । ତାହାଙ୍କର ଦକ୍ଷିଣ ଆଫ୍ରିକା ଛାଡ଼ି ଆସିବା ବାର୍ତ୍ତାରେ ଲୋକେ ଶୋକରେ ଅଧୀର ହୋଇ ପଡ଼ିଲେ । ଏପରି କି, ଯେଉଁମାନେ ତାହାଙ୍କୁ ଶତ୍ରୁ ବୋଲି ମନେ କରୁଥିଲେ, ସେମାନେ ଆଜି ତାହାଙ୍କର ମୋହନମନ୍ତ୍ରରେ ମୁଗ୍ଧ । ଶ୍ୱେତାଙ୍ଗମାନେ ତାହାଙ୍କର ବିଦାୟ ଉପଲକ୍ଷରେ ସଭା ସମିତି ବସିଲା । କି ଧଳା କି କଳା ସମସ୍ତେ ଆସି ତାହାଙ୍କର ଗୁଣ ବର୍ଣ୍ଣନା କଲେ । ନାନାପ୍ରକାର ମୂଲ୍ୟବାନ୍ ପଦାର୍ଥ ମଧ୍ୟ ଉପହାର ଦେଲେ ।

ଏ ତ ଗଲା ଏକ ଦୃଶ୍ୟ, ଅନ୍ୟ ଦୃଶ୍ୟକୁ ଟିକିଏ ଭାବି ଦେଖନ୍ତୁ । ଏହି କ୍ଷୀଣ ଯୁଦ୍ଧ ତାହାଙ୍କର ଆଠ ବର୍ଷକାଳ ସ୍ଥାୟୀ ହୋଇଥିଲା । ଏହି କାଳ ମଧ୍ୟରେ ଅତି କଠୋର ସାଧନା କରିବାକୁ ପଡ଼ିଥିଲା । ଏହି କଠୋର ସାଧନା ମଧ୍ୟରେ ତାହାଙ୍କର ଧର୍ମ୍ମପ୍ରାଣତା ଅତି ଉଜ୍ଜ୍ୱଳ ଭାବରେ ଫୁଟିଅଛି । ଥରେ ସେ ଯାହାଜରୁ

ଓହଲାଇ ଅସିଲବେଳେ ତାହାଙ୍କ ଉପରେ ଯେଉଁ ଭୀଷଣ ଅତ୍ୟାଚାର ହୋଇଥିଲା, କଚେରୀକୁ ପ୍ରଥମବାର ରେଜଷ୍ଟରୀ କରିବାକୁ ଗଲାବେଳେ ତାହାଙ୍କର ସହକର୍ମୀ ମଧ୍ୟରୁ କେତେଜଣ ମୁସଲମାନ ତାହାଙ୍କୁ ଯେପରି ଜୀବନ୍ମୃତ କରି ପକାଇଥିଲେ, ସେ ସବୁ ଭାବିଲେ ଶରୀରର ରୋମ ଠାଙ୍କୁରି ଉଠେ । କେବଳ ଏତିକି ନୁହେଁ, ତାହାଙ୍କ ଜୀବନ ଯେ ଏହିପରି କେତେଥର ମୃତ୍ୟୁସଙ୍କଟାପନ୍ନ ହୋଇଅଛି, ତାହାର ଇୟତ୍ତା ନାହିଁ । ପ୍ରଥମ ଥର ସେ ଜେଲକୁ ଯେତେବେଳେ ଯାନ୍ତି, ତାହାଙ୍କର କନିଷ୍ଠ ପୁତ୍ର ରୋଗାକ୍ରାନ୍ତ ହୋଇ ମରିବ କି ବଞ୍ଚିବ କିଛି ସ୍ଥିର ନ ଥିଲା; ଦ୍ୱିତୀୟ ଥର ଜେଲକୁ ଗଲାବେଳେ ତାହାଙ୍କର ସହଧର୍ମିଣୀ ସେହିପରି ଭୟଙ୍କର ରୋଗଗ୍ରସ୍ତା । କିନ୍ତୁ ଏ ସବୁ ପ୍ରତି ସେ ତିଳେମାତ୍ର ମନ ଦେଇ ନାହାନ୍ତି । ଯାହାକୁ କର୍ତ୍ତବ୍ୟ ବୋଲି ମନେ କରିଅଛନ୍ତି, ତାହାକୁ ପାଳନ କରିବାକୁ ଯାଇ ସେ ଆଉ ସବୁକଥା ଭୁଲି ଯାଇଅଛନ୍ତି । ନିଜର ସ୍ତ୍ରୀ, ସନ୍ତାନମାନଙ୍କୁ ମଧ୍ୟ ଏହି ଲଢ଼ାଇ ମଧ୍ୟରେ ପ୍ରବେଶ କରାଇ ଜେଲକୁ ପଠାଇଅଛନ୍ତି । ନିଜେ ଯେ କେତେ କଷ୍ଟ ସହ୍ୟ କରିଅଛନ୍ତି ତାହା ବର୍ଣ୍ଣନା କରିବ କିଏ ?

ଏପରି ସ୍ଥଳରେ ଆଜି ଯେ ତାହାଙ୍କର ସର୍ବତ୍ର ଆଦର, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଶେଷରେ ମଧ୍ୟ ତାହାଙ୍କୁ ଯେଉଁ ସବୁ ବହୁମୂଲ୍ୟ ପଦାର୍ଥ-ମାନ ଭେଟି ମିଳିଲା, ସେ ସେସବୁ ଗ୍ରହଣ କଲେ ନାହିଁ । ସେହିଠାରେ ଲୋକଙ୍କର ହିତକାର୍ଯ୍ୟରେ ବ୍ୟୟିତ ହେବାପାଇଁ ସମସ୍ତ ଉପହାର ଦ୍ରବ୍ୟ ଦାନ କରିଦେଲେ । ଦକ୍ଷିଣ ଅଫ୍ରିକାକୁ ଗଲାବେଳେ ସେ ଜଣେ ଉଚ୍ଚଶିକ୍ଷିତ ସମ୍ଭ୍ରାନ୍ତସମ୍ପନ୍ନ ଧନୀ ଭାରତୀୟ ଯୁବକରୂପରେ ଯାଇଥିଲେ । କିନ୍ତୁ ଆଜି ଦକ୍ଷିଣ ଅଫ୍ରିକା ଛାଡିଲାବେଳକୁ ସେ ଜଣେ ତ୍ୟାଗୀ ଓ ମହାପୁରୁଷ । ଦକ୍ଷିଣ ଅଫ୍ରିକାକୁ ଗଲାବେଳେ ଘୋଡ଼ାଗାଡିର ସର୍ଦ୍ଦାର ତାହାଙ୍କୁ ତାର ଗୋଡ଼ତଳେ ବସିବାପାଇଁ ଆଦେଶ କରିଥିଲା, ଗାନ୍ଧୀ ପୁଣି ତାହା ନ କରିବାରୁ ମୁଥ ଲଗାଇଥିଲା, କିନ୍ତୁ ଆଜି ସେହି ଗାଡିର ସର୍ଦ୍ଦାର ଯେଉଁମାନଙ୍କର ଶ୍ରଦ୍ଧାର

ସଙ୍ଗେ କଥା କହିବାର ଉପଯୁକ୍ତ ନୁହେ, ସେମାନେ ଆସି ତାହାଙ୍କର ପଦତଳେ ନତମସ୍ତକ । ଏହିପରି ତାହାଙ୍କର ଦକ୍ଷିଣ ଅଫ୍ରିକା ଜୀବନରେ କେତେ କ ବ୍ୟାପାର ଘଟିଅଛି, ତାହା ସବୁ ଉଲ୍ଲେଖ କରିବା ଅସମ୍ଭବ । ମହାତ୍ମା ଗାନ୍ଧୀ ଦକ୍ଷିଣ ଅଫ୍ରିକା ଛାଡ଼ିବେ । ଏଥିରେ ମଧ୍ୟ ତାହାଙ୍କର ନିଜର ତେତେ ଅନନ୍ଦ ନାହିଁ । ଯେଉଁମାନଙ୍କ ସହିତ ଜୀବନର ୨୦ ବର୍ଷ କାଳ କଟାଇ ଦେଲେଣି, ପୁଣି ଯେଉଁମାନଙ୍କ ସହିତ ରହି ଜୀବନରେ ଏତେ ସୁଖ ଦୁଃଖ ଭୋଗ କରିଅଛନ୍ତି, ସେମାନଙ୍କୁ ଛାଡ଼ି ଆସିଲାବେଳକୁ ନିଶ୍ଚୟ ମନ ଟିକିଏ ଅଧୀର ହେବ । ତାହାହେଲେ ମଧ୍ୟ ଗାନ୍ଧୀ ଠିକ୍ କଲେ ଯେ, ସେ ନିଶ୍ଚୟ ଦକ୍ଷିଣ ଅଫ୍ରିକା ଛାଡ଼ି ଆସିବେ । କାରଣ ତାହାଙ୍କର ବିଶ୍ୱାସ, ଭାରତବର୍ଷକୁ ନ ଆସିଲେ ତାହାଙ୍କର ଜୀବନର ମୁକ୍ତି ବିଧାନ କରି ପାରିବେ ନାହିଁ । ଏହା ମଧ୍ୟ ସେ ତାହାଙ୍କର ବିଦାୟ ସଭାରେ ବ୍ୟକ୍ତ କରିଥିଲେ । ଯାହାହେଉ, ଅବଶେଷରେ ଦିନ ସ୍ଥିର ହେଲା, ମହାତ୍ମା ଗାନ୍ଧୀ ସମସ୍ତ ଦକ୍ଷିଣ ଅଫ୍ରିକାର ଭାଇ ବନ୍ଧୁମାନଙ୍କୁ ଛାଡ଼ି ଲଣ୍ଡନ ଯାତ୍ରା କଲେ ।

ମହାତ୍ମା ଗାନ୍ଧୀ ବର୍ତ୍ତମାନ ସବୁ ଦିନ ପାଇଁ ଦକ୍ଷିଣ ଅଫ୍ରିକା ଛାଡ଼ି ଆସିଲେ । ଭାରତବର୍ଷକୁ ଫେରି ଆସୁଅଛନ୍ତି । ବିଲାତ ହୋଇ ଭାରତବର୍ଷକୁ ଆସିବେ । ଗୋଖଲେ ମହାଶୟ ବିଲାତରେ ବେମାର ପଡ଼ିଥିବା ହେତୁରୁ ଗାନ୍ଧୀ କେବଳ ଏହାଙ୍କର ସେବା କରିବାପାଇଁ ବିଲାତ ଯାଉଅଛନ୍ତି । ଗୋଖଲେଙ୍କୁ ସେ ନିଜର ରାଜନୈତିକ ଗୁରୁ ବୋଲି ମନେ କରନ୍ତି । ଅନେକ ସମୟରେ ସେ ଏହାଙ୍କ କଥାରେ ନିଜ ମତ ବଦଳାଇଥାନ୍ତି । ଦକ୍ଷିଣ ଅଫ୍ରିକା ଛାଡ଼ିବା ପୂର୍ବରୁ ମହାତ୍ମା ଗାନ୍ଧୀ ସଙ୍କଳ୍ପ କରିଅଛନ୍ତି ଯେ, ସେ ଆଉ ଜୋତା ମୋଜା ଇତ୍ୟାଦି କିଛି ପିନ୍ଧିବେ ନାହିଁ । ଅତି ସରଳ ଭାବରେ ଜୀବନ ଯାପନ କରିବେ । ଏତେଦିନ ପର୍ଯ୍ୟନ୍ତ କଠୋର ପରିଶ୍ରମ କରି ସେ ଅତ୍ୟନ୍ତ ରୁଗ୍ଣ ହୋଇ ଯାଇଥିଲେ । ବର୍ତ୍ତମାନ ଖାଲି ଗୋଡ଼ରେ ସିବା ଆସିବା କରିବାଦ୍ୱାରା ଏବଂ ଉପଯୁକ୍ତ ଖାଦ୍ୟ ନ ଖାଇବା ହେତୁ ସେ ଅତିଶୟ ଦୁର୍ବଳ ହୋଇ

ପଡ଼ିଲେ । ଡାକ୍ତର ତାହାଙ୍କୁ ଗରମ ମୋଜା ଓ ଜୋତା ପିନ୍ଧିବାକୁ ଓ ହିକାଏ ସାବଧାନ ରହିବାକୁ ବାରମ୍ବାର ଅନୁରୋଧ କରିଥିଲେ । କିନ୍ତୁ ସେ ତାହା ନ ଶୁଣି ନିଜର ସଂକଳ୍ପ ଅନୁସାରେ ଚାଲିଲେ । ଗୋଖଲେ ମହାଶୟ ଏ କଥା ଜାଣି ପାରି ଗାନ୍ଧୀଙ୍କୁ କହିଥିଲେ, ତୁମେ ଡାକ୍ତର କଥା ମାନି ନ ଚଳିଲେ ମୋ ପାଖକୁ ଆସିବ ନାହିଁ । ଏତିକରେ ଗୋଟିଏ ଛୋଟ ପିଲା ପରି ଗାନ୍ଧୀ ତାହାଙ୍କ କଥାକୁ ଶିରୋଧାର୍ଯ୍ୟ କଲେ । ଗୁରୁଜନଙ୍କ ପ୍ରତି ଗାନ୍ଧୀଙ୍କର. କିପରି ଶ୍ରଦ୍ଧା ତାହା ଏହି ଘଟଣାରୁ ସ୍ପଷ୍ଟ ଜଣା ପଡ଼ୁଅଛି ।

ସେ ବିଲାତରେ ରହି ଗୋଖଲେଙ୍କର ସେବା କରୁଅଛନ୍ତି, ଏହି ସମୟରେ ଜର୍ମାନି ଓ ଇଂରେଜ ମଧ୍ୟରେ ମହାସମର ଆରମ୍ଭ ହେଲା । ମହାତ୍ମା ଗାନ୍ଧୀ ଦେଖିଲେ ଯେ ସେ ଯେଉଁ ସାମ୍ରାଜ୍ୟ ମଧ୍ୟରେ ରହି ସମସ୍ତ ଅଧିକାର ଦାବି କରୁଅଛନ୍ତି, ସେହି ସାମ୍ରାଜ୍ୟ ଉପରେ ବର୍ତ୍ତମାନ ଏପରି ଗୋଟିଏ ବିପଦ ଆସି ଉପସ୍ଥିତ । ସେ ହଠାତ୍ ସାମ୍ରାଜ୍ୟର ସେବାପାଇଁ ପ୍ରସ୍ତୁତ ହେଲେ । ବିଲାତରେ ଯେତେ ଭାରତବାସୀ ଥିଲେ, ସେମାନଙ୍କ ମଧ୍ୟରୁ କେତେକଙ୍କୁ ନେଇ ଗୋଟିଏ ସେବକସଙ୍ଘ ଗଠନ କଲେ । ନିଜେ ନିଜର ସ୍ତ୍ରୀ ଉଭୟେ ସେହି ସଂଘର ସେବକରୂପେ ନାମ ଲେଖାଇଲେ । କିନ୍ତୁ ତାହାଙ୍କର ଶରୀର ଏତେ ଦୁର୍ବଳ ହୋଇ ଯାଇଥାଏ ଯେ, ତାହାଙ୍କୁ ଦେଖିଲେ ଲୋକର ଭୟ ହୁଏ । ଏପରି ଅବସ୍ଥାରେ ସେବକ କାର୍ଯ୍ୟ କରିବାକୁ ସମସ୍ତେ ତାହାଙ୍କୁ ବାରଣ କଲେ । ଗାନ୍ଧୀ ବନ୍ଧୁମାନଙ୍କର ଅନୁରୋଧ ରକ୍ଷା କରି ଶେଷରେ ଭାରତକୁ ଫେରି ଆସିଲେ ।

ଭାରତକୁ ଫେରି ଆସି ସେ କେଉଁଠାରେ ରହିବେ । କିଛି ଆଗରୁ ସ୍ଥିର ହୋଇ ନାହିଁ । ଦକ୍ଷିଣ ଆଫ୍ରିକାରେ ତାହାଙ୍କ ସଙ୍ଗ ଯେଉଁ କେତେକଜଣ ଥିଲେ, ସେମାନେ ରବୀନ୍ଦ୍ରନାଥ ଠାକୁରଙ୍କର ବୋଲପୁର ଶାନ୍ତିନିକେତନରେ ଆଗରୁ ଆଶ୍ରୟ ନେଇଅଛନ୍ତି । ଆଗରୁ କହା ଯାଇଅଛି, ମହାତ୍ମା ଗାନ୍ଧୀ ବର୍ତ୍ତମାନ ପଥର

ଉଠାଗଲା । ତାହାଙ୍କର ଆଗମନର ବହୁ ପୂର୍ବରୁ ଭାରତବର୍ଷରେ ତାହାଙ୍କର ଆଗମନବାର୍ତ୍ତା ପ୍ରଚାରିତ ହୋଇ ଯାଇଥିଲା । ସେ ଯେଉଁଦିନ ବମ୍ବେଇ ବନ୍ଦରରେ ଆସି ଉପସ୍ଥିତ ହେଲେ, ସେ ଦିନର ଦୃଶ୍ୟ କିଏ ବର୍ଣ୍ଣନା କରି ପାରିବ ? ସହସ୍ର ସହସ୍ର ଲୋକ ତାହାଙ୍କୁ ଅଭ୍ୟର୍ଥନା କରିବାପାଇଁ ଚୂର୍ଣ୍ଣ । ନଗରକାଯ୍ୟ ବଡ଼ ବଡ଼ କର୍ମଚାରୀମାନେ ମଧ୍ୟ ସେଠାରେ ଉପସ୍ଥିତ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ସମସ୍ତେ ମିଳି ତାହାଙ୍କର ସମ୍ବର୍ଦ୍ଧନା କରୁଅଛନ୍ତି । ଏହାପରି ସେ ଭାରତବର୍ଷ ମଧ୍ୟରେ ଯେଉଁଆଡ଼େ ଯାଇଅଛନ୍ତି, ସେହିଆଡ଼େ ତାହାଙ୍କର ଆଦର ଓ ଅଭ୍ୟର୍ଥନା । ଯେତେବେଳେ ଏପରି ଚାରିଅଡ଼େ ତାଙ୍କର ଆଦର ଅଭ୍ୟର୍ଥନା ଚାଲିଥାଏ, ସେହି ସମୟରେ ତାହାଙ୍କର ପରମଭକ୍ତିର ପାତ୍ର ମହାମତି ଦେଶପ୍ରାଣ ଗୋଖଲେ ମହାଶୟ ଇହଧାମ ତ୍ୟାଗ କଲେ । ଏହି ଘଟଣାରେ ମହାତ୍ମା ଗାନ୍ଧୀ ବିଶେଷ ମର୍ମାହତ ହୋଇଥିଲେ । ଗୋଖଲେ ମହାଶୟଙ୍କର ଅକାଳ ମୃତ୍ୟୁରେ ଶୋକର ଚିହ୍ନସ୍ୱରୂପ ସେହି ଦିନରୁ ସେ ଜୋତା ବ୍ୟବହାର ଏକାବେଳକେ ଛାଡ଼ି ଦେଇଅଛନ୍ତି ।

ଭାରତବର୍ଷକୁ ଆସିବା ଆଗରୁ ଦକ୍ଷିଣ ଆଫ୍ରିକାରେ ମହାତ୍ମା ଗାନ୍ଧୀ ଖଣ୍ଡିଏ ପୁସ୍ତକ ଲେଖିଥିଲେ । ତାହାର ନାମ ହିନ୍ଦୁ ସ୍ୱରାଜ୍ୟ । ଗୋଖଲେ ମହାଶୟ ଏ ପୁସ୍ତକ ଖଣ୍ଡି ଦେଖି ବଡ଼ ଦୁଃଖିତ ହୋଇଥିଲେ । କାରଣ ମହାତ୍ମା ଗାନ୍ଧୀ ଏହି ପୁସ୍ତକ ମଧ୍ୟରେ ଯେଉଁ ଭାବ ସବୁ ପ୍ରକାଶ କରିଥିଲେ, ସେ ସବୁ ତାହାଙ୍କର ରୁଚିକର ହୋଇ ନ ଥିଲା । ସେ ମନେ କରିଥିଲେ, ମହାତ୍ମା ଗାନ୍ଧୀ ଅନେକ ଦିନ ଦେଶର ବାହାରେ ରହି ଦେଶର ଅବସ୍ଥା ଭୁଲି ଯାଇଁ ଅଛନ୍ତି । ଏହି ପୁସ୍ତକରେ ସେ ଯାହା ଲେଖିଅଛନ୍ତି, ସେହିପରି କାର୍ଯ୍ୟ କରିବାକୁ ଗଲେ ସେ କିଛି କରି ପାରିବେ ନାହିଁ । ସୁତରାଂ ସେ ଗାନ୍ଧୀଙ୍କୁ ଉପଦେଶ ଦେଇଥିଲେ ଯେ, ଭାରତବର୍ଷରେ ପୂରା ଗୋଟିଏ ବର୍ଷ ରହି ଦେଶର ଅବସ୍ଥା ଭଲକରି ନ ଜାଣିଲେ ସେ ଯେପରି କୌଣସି କାର୍ଯ୍ୟରେ ହାତ ନ ଦିଅନ୍ତି । ଗୋଖଲେ ପ୍ରାଣତ୍ୟାଗ କଲା ପରେ ଗାନ୍ଧୀ ବର୍ତ୍ତମାନ ତାହାଙ୍କର ଉପଦେଶ ଅନୁସାରେ ଜୀବନ ଯାପନ କରିବାକୁ ବିଶେଷ ଆଗ୍ରହାନ୍ୱିତ ।

ଭାରତକୁ ଫେରି ଆସି ପ୍ରଥମ ଚାରି ମାସ ସେ ଦେଶର ନାନା ସ୍ଥାନରେ ବୁଲି ଦେଶର ଅବସ୍ଥା ପରିଦର୍ଶନ କରିବାକୁ ଲାଗିଲେ । ଏହା ପରେ ଗୁଜରାଟର ରାଜଧାନୀ ଅହମେଦାବାଦ ନଗର ନିକଟରେ ଗୋଟିଏ ଆଶ୍ରମ ସ୍ଥାପନ କରି ସେହିଠାରେ ନିଜର ତପସ୍ୟା ଆରମ୍ଭ କଲେ । ଏହିଠାରେ ସେ ପୂରା ଗୋଟିଏ ବର୍ଷ ଅଜ୍ଞାତବାସରେ ରହିଥିଲେ କହିଲେ ଚଳେ । ଆଶ୍ରମଟିର ବର୍ତ୍ତମାନ ଅବସ୍ଥା ଯେପରି, ସେତେବେଳେ ସେପରି ନ ଥିଲା । ଆମ୍ଭେମାନେ ଶୁଣିଅଛୁଁ, ଆଶ୍ରମବାସିଗଣ କାଲି କଣ ଖାଇବେ, ଏହା ମଧ୍ୟ ତାହାଙ୍କୁ ଅନେକ ସମୟରେ ଚିନ୍ତା କରିବାକୁ ପଡ଼ିଅଛି । ବର୍ତ୍ତମାନ ପାଠକଗଣ ଟିକିଏ ଦେଖନ୍ତୁ, ସେ ଆଶ୍ରମରେ କିପରି ଜୀବନ ଯାପନ କରୁଥିଲେ ।

ପ୍ରତ୍ୟହ ସକାଳ ୪ଟାବେଳେ ଶଯ୍ୟାରୁ ଉଠି ଦେଢ଼ ଘଣ୍ଟା କାଳ ଚରଖା ପେଷନ୍ତି । ତତ୍ପରେ ନିତ୍ୟକର୍ମ ଓ ଘ୍ନାନ ସାରି ଉପାସନା କରନ୍ତି । ଉପାସନା ପରେ ନିଜ ହାତରେ ସମସ୍ତଙ୍କୁ କିଛି ଜଳପାନ କରାଇ କାର୍ଯ୍ୟରେ ଲାଗିଯାନ୍ତି । ସକାଳବେଳା ୭ଟା ଠାରୁ ୧୦ଟା ପର୍ଯ୍ୟନ୍ତ ଆଶ୍ରମର କାର୍ଯ୍ୟ ହୁଏ । ଏହି ସମୟରେ ମହାତ୍ମା ଗାନ୍ଧୀ ପାଣି ବୁହନ୍ତି ଓ ବଗିଚାରେ କୋଡ଼ି ହାଣି ମାଟି କାମ କରନ୍ତି । ସକାଳେ ଆଶ୍ରମର ପାଇଖାନା ମଧ୍ୟ ହାତରେ ପରିଷ୍କାର କରନ୍ତି । ୧୦ଟା ପରେ ଭୋଜନର ସମୟ । ମହାତ୍ମା ଗାନ୍ଧୀ ନିଜ ହାତରେ ସମସ୍ତଙ୍କୁ ପରିବେଷଣ କରନ୍ତି । ସେତେବେଳେ ଆଶ୍ରମରେ ଖାଇବାକୁ ଲୁଣ, ତେଲ, ଘିଅ, ଦୁଧ ଇତ୍ୟାଦି କିଛି ନ ଥିଲା । କେବଳ ଜଳ ପାଣିରେ ସିଦ୍ଧ ହେଉଥିଲା । ମସଲା ମଧ୍ୟରେ କେବଳ ଟିକିଏ ହଳଦି । ସେ ଯାହା ହେଉ, ଭୋଜନ ପରେ ବାସନ ମାଜିବାକୁ ପଡ଼େ । ବାସନ କହିଲେ କେବଳ ଖାଇବାର ଥାଳୀ ଗିନା ନୁହେ । ସେ ଦେଶରେ ପିତଳ ହଣ୍ଡାରେ ସବୁ ରନ୍ଧା ହୁଏ । ଏହି ହଣ୍ଡା ସବୁ ଦୁଇବେଳା ମାଜିବାକୁ ପଡ଼େ । ଗାନ୍ଧୀ ମଧ୍ୟ ତାହା ନିଜ ହାତରେ ଅନ୍ୟାନ୍ୟ-ମାନଙ୍କ ସହିତ ମାଜନ୍ତି । ଏହା ପରେ ଚିଠିପତ୍ର ଦେଖିବାକୁ ହୁଏ । ଖବର-କାଗଜ ପଢ଼ା ହୁଏ । ପୁଣି ଗୋଟାକବେଳେ କାର୍ଯ୍ୟାରମ୍ଭ । ଏହି ସମୟରେ

ଗାନ୍ଧୀ ଯାଇଁ ଲୁଗା ବୁଣନ୍ତି । ଏହିପରି ୮ଟା ବାଜେ । ସକାଳ ପରି ଓପରବେଳା ସେହିପରି ଆହାର ଓ ବାସନମଜା । ଆଶ୍ରମରେ ସନ୍ଧ୍ୟା ଛ ଘଣ୍ଟା ପୂର୍ବରୁ ରାତ୍ରି ଭୋଜନ ଶେଷ ହୁଏ । ଏହି କାମ ଶେଷ ହେଉଁ ହେଉଁ ସାତ ଘଣ୍ଟା ବାଜେ । ସନ୍ଧ୍ୟା ସମୟରେ ପୁଣି ଈଶ୍ୱରପ୍ରାର୍ଥନା । ଏହି ସମୟରେ ମହାତ୍ମା ଗାନ୍ଧୀ ନିଜେ ଧର୍ମଗ୍ରନ୍ଥ ପଢ଼ି ସମସ୍ତଙ୍କୁ ଶୁଣାନ୍ତି । ପ୍ରାର୍ଥନା ପରେ କିଏ ବୁଲିବାକୁ ଯାଏ, କିଏ ଅବା ଅନ୍ୟ କିଛି ପୁସ୍ତକ ପଢ଼େ । ଶେଷରେ ରାତ୍ର ୯ଟା ମଧ୍ୟରେ ସମସ୍ତେ ଶୋଇବାକୁ ଯାନ୍ତି । ଏହାହିଁ ଆଶ୍ରମର ଦୈନିକ କାର୍ଯ୍ୟବିବରଣୀ ।

ଏପରି ଭାବରେ ମହାତ୍ମା ଗାନ୍ଧୀ ଏକବର୍ଷକାଳ ଅଜ୍ଞାତବାସ କରି ଥିଲେ । ଆଶ୍ରମର ଏହି କାର୍ଯ୍ୟ ସଙ୍ଗେ ସଙ୍ଗେ ସେ ଅହିଂସା ଓ ଶିକ୍ଷା ପ୍ରଭୃତି ଗୁରୁତର ବିଷୟ ନେଇ କେବେ କେବେ ନୂତନ ଚିନ୍ତା ନୂତନ ଭାବପୂର୍ଣ୍ଣ ପ୍ରବନ୍ଧ ସମ୍ବାଦପତ୍ରମାନଙ୍କରେ ପ୍ରକାଶ କରିଥିଲେ । ଯେ କେହି ତାହାଙ୍କ ସଙ୍ଗେ କିଛି ପରାମର୍ଶ କରିବାକୁ ଆସେ, ତାହା ସହିତ ମଧ୍ୟ ଆଳାପ କରନ୍ତି । କିଛି ସମୟ ଲୋକେ ମହାଶୟଙ୍କର ସ୍ଥାନ ପାଣ୍ଡିଚେରୀ ସକାଶେ ଶ୍ରଦ୍ଧା ଆଦାୟ କରିବାପାଇଁ ପୃଥିବୀର ଭିତରେ ବୁଲିଥିଲେ । ସେ ଅଜ୍ଞାତରେ ରହିଲେ କଣ ହେବ, ତାହାଙ୍କ ନାମ ସମସ୍ତ ଦେଶରେ ବ୍ୟାପି ଯାଇଥିଲା । ବହୁଅଞ୍ଚଳ ଲୋକେ ଯାଇ ଦେଶ କଥା ତାହାଙ୍କ ଆଗରେ କହୁଥିଲେ । ଅନେକେ ସେ କି କାର୍ଯ୍ୟର ଭାର ନେବେ, କିପରି ଏବଂ କି କାର୍ଯ୍ୟ ଦେଶରେ ଆରମ୍ଭ କରିବେ, ତାହାକୁ ଅପେକ୍ଷା କରୁଥାନ୍ତି । ଆଉରି ଗୋଟିଏ ଦଳର ଲୋକ ମଧ୍ୟ ଗାନ୍ଧୀଙ୍କୁ ଏହି ସମୟରେ ସମାଲୋଚନା କରୁଥାନ୍ତି । ସେମାନଙ୍କର ସମାଲୋଚନାର ବିଷୟ ଏହି ଯେ, ଗାନ୍ଧୀ ଭାରତବର୍ଷରେ କିଛି କରି ପାରିବେ ନାହିଁ । ଦକ୍ଷିଣ ଆଫ୍ରିକା ଓ ଭାରତବର୍ଷ ଏହି ଦୁଇ ଦେଶ ମଧ୍ୟରେ ଅନେକ ପ୍ରଭେଦ । ଏଠାରେ କିଛି କରିବା କଥା ଦୂରେ ଥାଉ, ପ୍ରକାଶ୍ୟ ଭାବରେ ସତକଥା କହିବାକୁ ଆରମ୍ଭ କଲାକ୍ଷଣି ସରକାର ତାଙ୍କୁ ଧରି ଜବଦ୍ କରି ଦେବେ । ଏପରି ଦେଶରେ କଣ ହୋଇ ପାରେ ? ଏ ସବୁ ଶୁଣି ଗାନ୍ଧୀ ଚୁପ୍ କରି ରହିଥାନ୍ତି ।

ସନ ୧୯୧୬ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ନୌ ସହରରେ ଭାରତବର୍ଷର ଜାତୀୟ ମହାସଭା କଂଗ୍ରେସର ଏକ ବୈଠକ ହେଲା । ମହାତ୍ମା ଗାନ୍ଧୀ ଏହି କଂଗ୍ରେସରେ ଯୋଗ ଦେବାକୁ ଯାଇଥିଲେ, ସେଠାରେ ବିହାରର ଚମ୍ପାରଣ ଜିଲ୍ଲାରେ ନୀଳଚାଷ କଥା ପଡ଼ିଥିଲା । ବହୁକାଳରୁ ସେଠାରେ ସାହେବମାନଙ୍କର ନୀଳକୋଠି ଅଛି । ସେଠାରେ ପ୍ରଜାମାନଙ୍କୁ ବଡ଼ ହଇରାଣ କରନ୍ତି । ଏହି ବିଷୟ ନେଇ ବିହାରର ଲୋକମାନେ ବହୁ ଆନ୍ଦୋଳନ କରି ଥକି ପଡ଼ିଲେଣି । ସେହି ବର୍ଷ ସେମାନେ ଏହି କଥା କଂଗ୍ରେସରେ ପକାଇଲେ । ମହାତ୍ମା ଗାନ୍ଧୀଙ୍କ ଆଗରେ ମଧ୍ୟ ଏ କଥା ପଡ଼ିଲା । କିନ୍ତୁ ବିଷୟଟି ଅମୂଳଚୂଳ ନ ଜାଣି ଗାନ୍ଧୀ କଦାପି କାହିଁରେ ହାତ ଦିଅନ୍ତି ନାହିଁ । ସୁତରାଂ ସେ କଂଗ୍ରେସରେ ଚମ୍ପାରଣ ବିଷୟରେ କିଛି ନ କହି, ପ୍ରଥମେ ସେହି ଜିଲ୍ଲାକୁ ଯିବାକୁ ପ୍ରତିଶ୍ରୁତ ହେଲେ । କଂଗ୍ରେସ ଶେଷ ହେଲା । ମହାତ୍ମା ଗାନ୍ଧୀ ଆଶ୍ରମକୁ ଫେରିଗଲେ । କିନ୍ତୁ ତାହାଙ୍କର ଯେ କଥା ମନରେ ଥାଏ । ଦିନେ ସମୟ ଦେଖି ଚମ୍ପାରଣ ଜିଲ୍ଲାକୁ ବାହାରିଲେ । ପ୍ରଥମେ ଆସି ମୁଜାଫରପୁର ସହରରେ ରହିଲେ । ସେଠାରେ କମିଶନର ସାହେବଙ୍କ ସହି ଦେଖା କରି ନିଜର ଅଭିପ୍ରାୟ ଜଣାଇଲେ ।

ମହାତ୍ମା ଗାନ୍ଧୀଙ୍କର ପ୍ରସ୍ତାବନା ଶୁଣି କମିଶନର ସାହେବ ଚମକି ଉଠିଲେ । ସେ ହଠାତ୍ କହି ପକାଇଲେ ତାଙ୍କୁ ଏଠାକୁ କିଏ ଡାକିଲା? ବର୍ତ୍ତମାନ ଏହି ନୀଳକୋଠି ସମସ୍ୟା ନେଇ ଯେପରି ବ୍ୟାପାର ଚାଲିଅଛି, ତହିଁରେ ବାହାରରୁ ଆଉ ଜଣେ ଆସି ମଝିରେ ପଡ଼ିବା ଭଲ ହେବ ନାହିଁ, ବରଂ ଅନେକ ଗୋଳଯୋଗର ଆଶଙ୍କା କରି ଯାଇ ପାରେ । ସୁତରାଂ ସେ ଏ ସବୁ ବିଷୟରେ ପାଦ ନ ପକାଇ ଫେରିଗଲେ ଭଲ ହୁଅନ୍ତା । ଗାନ୍ଧୀ ସହଜରେ ଭୁଲିବାର ଲୋକ ନୁହନ୍ତି, ତାଙ୍କୁ ଦୁଇ ଚାରି କଥା କହି ଭୁଲାଇ ଦେଲେ ଚଳିବ କାହିଁକି? କମିଶନର ସାହେବଙ୍କର ପ୍ରସ୍ତାବନା ଶୁଣି ମହାତ୍ମା ଗାନ୍ଧୀ କହିଥିଲେ, "ଆପଣ ଯାହା କହୁଛନ୍ତି, ତାହା ଭଲ କଥା । ମୁଁ ଏଠାରେ ତ କିଛି ଗୋଳମାଳ କରିବାକୁ ଆସି ନାହିଁ । ମୋର ଦେଶବାସୀଙ୍କଣ ମୋତେ ଡାକ କରି

ଆଣିଅଛନ୍ତି । ଆପଣ ଯଦି ଏହି ବିଷୟ ନେଇ ବ୍ୟସ୍ତ ଥାନ୍ତି, ସେ ତ ବହୁତ ସୁଖର କଥା । ଚାଲନ୍ତୁ ମୁଁ ଆପଣଙ୍କୁ ସାହାଯ୍ୟ କରିବି, ଆପଣ ମୋତେ ସାହାଯ୍ୟ କରିବେ । ଏପରି ଦୁଇ ଜଣ ମିଳି କାର୍ଯ୍ୟ କଲେ କାର୍ଯ୍ୟଟି ବଡ଼ ସହଜ ହୋଇ ପଡ଼ିବ । ଏଥିରେ ଗୋଳଯୋଗର କୌଣସି ଆଶଙ୍କା ରହିବ ନାହିଁ ।" ମହାତ୍ମା ଗାନ୍ଧୀଙ୍କର ଏ ପ୍ରସ୍ତାବ କମିଶନର ସାହେବଙ୍କର ମନକୁ ଆସିଲା ନାହିଁ । ସେ କହି ଉଠିଲେ—ନା, ନା, ଆପଣ ଏଥିରେ ଯୋଗ ଦେଲେ ଚଳିବ ନାହିଁ । ମୋ କଥା ମାନି ଆପଣ ଏଠାରୁ ଫେରିଯାନ୍ତୁ । ଏତିକରେ ସନ୍ତୁଷ୍ଟ ହୋଇ ଫେରିଯିବା ଗାନ୍ଧୀଙ୍କର ପ୍ରକୃତିବିରୁଦ୍ଧ । କମିଶନରଙ୍କ ନିକଟରୁ ଏପରି କଥା ସବୁ ଶୁଣି ତାହାଙ୍କ ମନରେ ଗୋଟିଏ ଭିନ୍ନ ଧାରଣା ଜନ୍ମିଲା । ସେ ନିଶ୍ଚୟ କରି ବସିଲେ ଯେ, ଯେଉଁ କାର୍ଯ୍ୟପାଇଁ ସେ ଆସିଅଛନ୍ତି, ତାହା ଭଲକରି ତଦନ୍ତ ନ କଲେ କଦାପି ଫେରିବେ ନାହିଁ ।

ଏହି ସଙ୍କଳ୍ପ କରି ମହାତ୍ମା ଗାନ୍ଧୀ ମୁଜାଫରପୁର ଛାଡ଼ି ମୋତିହାରି ଗଲେ । ଏହି ସମୟରେ ଚମ୍ପାରଣ ଜିଲ୍ଲାର ମାଜିଷ୍ଟ୍ରେଟ ସାହେବ ମହାତ୍ମା ଗାନ୍ଧୀଙ୍କ ଉପରେ ଗୋଟିଏ ନୋଟିସ ଜାରି କରି ଦେଲେ । ନୋଟିସଟି କମିଶନର ସାହେବଙ୍କର ପରାମର୍ଶ ଅନୁସାରେ ଜାରି ହୋଇଥିଲା । ସେଥିରେ ଲେଖା ଥିଲା ଯେ, ଗାନ୍ଧୀ ଏ ଜିଲ୍ଲାରେ ରହିଲେ ଜିଲ୍ଲାର ଶାନ୍ତିଭଙ୍ଗ ହୋଇ ପାରେ । ଏପରି କି, ଲୋକଙ୍କର ଜୀବନ ଉପରେ ଆଘାତ ପଡ଼ିବାର ଆଶଙ୍କା ଅଛି । ସୁତରାଂ ଅବିଳମ୍ବେ ସେ ଏ ଜିଲ୍ଲା ଛାଡ଼ି ଚାଲିଯାନ୍ତୁ । ଏହି ନୋଟିସ ପାଇ ମହାତ୍ମା ଗାନ୍ଧୀ ମାଜିଷ୍ଟ୍ରେଟ ସାହେବଙ୍କୁ ଉତ୍ତର ଦେଲେ ଯେ, ସେ ଲୋକମାନଙ୍କ ତରଫରୁ ଏଠାକୁ ଆସିଅଛନ୍ତି । ଯେଉଁ ଦାୟିତ୍ୱ ନେଇ ସେ ଏଠାକୁ ଆସିଅଛନ୍ତି, ତାହା କାର୍ଯ୍ୟରେ ପରିଣତ ନ କଲା ପର୍ଯ୍ୟନ୍ତ ଚମ୍ପାରଣ ଜିଲ୍ଲା ଛାଡ଼ି ଯାଇ ପାରିବେ ନାହିଁ । ଏଥିପାଇଁ ଯଦି ସରକାର ତାହାଙ୍କୁ କିଛି ଦଣ୍ଡ ଦିଅନ୍ତି, ତାହାହେଲେ ସେ ତାହା ନତମସ୍ତକରେ ଗ୍ରହଣ କରିବେ ।

ମାଜିଷ୍ଟ୍ରେଟଙ୍କୁ ଏହି ଉତ୍ତର ଦେଇ ସେ ଯେଉଁ କାର୍ଯ୍ୟପାଇଁ ଯାଇ ଥିଲେ, ସେହି କାର୍ଯ୍ୟର ଅନୁସନ୍ଧାନରେ ଅଗ୍ରସର ହେଲେ । ଏଣେ ମାଜିଷ୍ଟ୍ରେଟ ସାହେବ ଗାନ୍ଧୀଙ୍କୁ ହୁକୁମ ଅମାନ୍ୟ ଦୋଷରେ ଦୋଷୀ କରି ତାଙ୍କ ଉପରେ ଫୌଜଦାରୀ ଦଫା ଚଳାଇଲେ । ମହାତ୍ମା ଗାନ୍ଧୀ ଧରା ହୋଇ ଆସି ମାଜିଷ୍ଟ୍ରେଟଙ୍କ କଚେରୀରେ ହାଜର ହେଲେ । ସାଧାରଣ ଆସାମୀମାନେ ଯେଉଁଠାରେ ଠିଆ ହୋଇ ଜବାନବନ୍ଦୀ ଦିଅନ୍ତି, ସେହିଠାରେ ଠିଆ ହୋଇ ମହାତ୍ମା ଗାନ୍ଧୀ ମଧ୍ୟ ଜବାବ ଦେଇଥିଲେ । ଜବାବରେ ସେ କହିଥିଲେ, "ମାଜିଷ୍ଟ୍ରେଟ ସାହେବ ମୋ ଉପରେ ଯେଉଁ ଫୌଜଦାରୀ ମକଦମା ଚଳାଇ-ଅଛନ୍ତି ତାହାର କାରଣ ଏହି ଯେ, ଆମ୍ଭ ଦୁହିଙ୍କ ମଧ୍ୟରେ ମତପ୍ରଭେଦ ଘଟିଅଛି । ସେ କହନ୍ତି, ମୁଁ ଏଠାରେ ରହିଲେ ଜିଲ୍ଲାର ଶାନ୍ତିଭଙ୍ଗ ହେବ । ମୁଁ କହେ, ମୁଁ ଏଠାକୁ ଶାନ୍ତିଭଙ୍ଗ କରିବାକୁ ଆସି ନାହିଁ । ଏହି ସ୍ଥାନର ସାଧାରଣ ପ୍ରଜାମାନେ ଡାକିବାରେ ମୁଁ ଏଠାକୁ ଆସିଅଛି । ମୁଁ ଶୁଣିଅଛି, ଯେ ଏଠାରେ ନୀଲକୁଠୀ ସାହେବମାନେ ପ୍ରଜାମାନଙ୍କ ଉପରେ ବଡ଼ ଅତ୍ୟାଚାର କରୁଅଛନ୍ତି । ଏହା କେତେଦୂର ସତ୍ୟ, ତାହା ଜାଣିବାକୁ ମୁଁ ଚାହେଁ । ସରକାର କର୍ମଚାରୀମାନେ ଯାହା ଶୁଣନ୍ତି ସେହି ଅନୁସାରେ କାର୍ଯ୍ୟ କରନ୍ତି । ନିଜେ ସ୍ଥାନକୁ ଯାଇ ଶୁଣିବା କଥାର ସତ୍ୟ ମିଥ୍ୟା ତଦନ୍ତ କରନ୍ତି ନାହିଁ । କିନ୍ତୁ ଏପରି ଶୁଣିବା କଥାରେ ମୁଁ ବିଶ୍ୱାସ କରେ ନାହିଁ । ମୁଁ ପ୍ରକୃତ କଥା ଜାଣିବାକୁ ଚାହେଁ । ମାନବ ଜାତିର କଲ୍ୟାଣ ଓ ଦେଶଭାଇଙ୍କର ସେବା ମୋର ଜୀବନର ବ୍ରତ । ଏପରି ଅବସ୍ଥାରେ ସରକାରଙ୍କ ନିୟମକୁ ମୁଁ ପାଳନ କରି ପାରି ନାହିଁ । ସରକାର ଯେଉଁ ନିୟମ ବାନ୍ଧିଅଛନ୍ତି, ତହିଁରେ ଯେ ଭୁଲ ନାହିଁ ତାହା ନୁହେଁ । କାରଣ ତାହାସବୁ ମନୁଷ୍ୟଦ୍ୱାରା ପ୍ରଣୀତ । ମନୁଷ୍ୟପ୍ରଣୀତ ନିୟମକୁ ବଳି ଭଗବାନଙ୍କର ଏକ ନିୟମ ଅଛି । ତହିଁ ଉପରେ ମନୁଷ୍ୟର ବିବେକ ଓ ବୁଦ୍ଧିର ବାଣୀ ଅଛି । ଆଜି ମୁଁ ସେହି ଭଗବାନଙ୍କର ନିୟମକୁ ଓ ମୋର ବିବେକବାଣୀକୁ

ମାନି, ମନୁଷ୍ୟପ୍ରଣୀତ ନିୟମକୁ ଅମାନ୍ୟ କରିଅଛି । ଏଥିପାଇଁ ସରକାର ଯାହା ଦଣ୍ଡ ଦେବେ, ସେଥିପାଇଁ ମୁଁ ପ୍ରସ୍ତୁତ ।"

ମହାତ୍ମା ଗାନ୍ଧୀ ଧରା ହୋଇଅଛନ୍ତି, ଏହି ସମ୍ବାଦ ଦାବାନଳ ପରି ଦେଶର ଚାରିଆଡ଼େ ମାଡିଗଲା । ଦେଶ ଲୋକ ମାତି ଉଠିଲେ । ଚାରିଆଡ଼ୁ ଅନେକ ଲୋକ ଯାଇ ଚମ୍ପାରଣ ଜିଲାରେ ପହଞ୍ଚି ଗଲେ । ଦେଶର ପ୍ରଧାନ ପ୍ରଧାନ ନେତା ସବୁ ବଡ଼ଲାଟ ସାହେବଙ୍କ ନିକଟକୁ ତାର କରି ଏଥିର ପ୍ରତିବାଦ ଉଠାଇଲେ । ଖବରକାଗଜମାନଙ୍କରେ ମଧ୍ୟ ଏହି ବିଷୟର ତୀବ୍ର ଆନ୍ଦୋଳନ ଚାଲିଲା । ସମସ୍ତ ଭାରତବର୍ଷ ଏକାବେଳେକେ ପଡିଲା ଉଠିଲା । ସରକାରଙ୍କର ଗୋଳ ଅରହିର । କଣ କରିବେ, ଶେଷରେ ବାଧ୍ୟ ହୋଇ ମକଦ୍ଦମାକୁ ଉଠାଇନେଲେ । ମହାତ୍ମା ଗାନ୍ଧୀ ମୁକ୍ତି ପାଇଲେ । ମୁକ୍ତିର ପରେ ସେ ଯେଉଁ କାର୍ଯ୍ୟପାଇଁ ଯାଇଥିଲେ, ସେ କାର୍ଯ୍ୟରେ ମନ ପ୍ରାଣ ଢ଼ାଳି ଲାଗିପଡ଼ିଲେ । ତାଙ୍କୁ ଧରିବାରୁ ଲୋକଙ୍କ ମଧ୍ୟରେ ଗୋଟାଏ ଚହଳ ପଡ଼ି ଯାଇଥିଲା । ସୁତରାଂ ତାହାଙ୍କୁ କାର୍ଯ୍ୟ କରିବାକୁ ଯେତେ ଅସୁବିଧା ଭୋଗ କରିବାକୁ ପଡ଼ିଥାନ୍ତା, ତାହା ଆଉ ପଡ଼ିଲା ନାହିଁ । ସେ ଗ୍ରାମେ ଗ୍ରାମେ ବୁଲି ପ୍ରଜାମାନଙ୍କର ସମସ୍ତ ହାଲଚାଲ ବୁଝି ନେଲେ । ଏଣେ ସରକାର ମଧ୍ୟ ନିଶ୍ଚେଷ୍ଟ ରହିଲେ ନାହିଁ, ସେ ଗୋଟିଏ କମିଟି ଗଠନ କରି ତହିଁରେ ମହାତ୍ମା ଗାନ୍ଧୀଙ୍କୁ ଜଣେ ସଭ୍ୟ ନିଯୁକ୍ତ କଲେ । କମିଟି ମଧ୍ୟ ତଦନ୍ତ କାର୍ଯ୍ୟ ଆରମ୍ଭ କଲେ । ମହାତ୍ମା ଗାନ୍ଧୀଙ୍କ ଚେଷ୍ଟାରେ ଅନେକ ସତ୍ୟ ଜଣା ପଡିଲା । ଶେଷରେ ଏହି କମିଟି ଗୋଟିଏ ରିପୋର୍ଟ ସରକାରଙ୍କ ନିକଟରେ ଦାଖଲ କଲେ । ରିପୋର୍ଟରେ ସମସ୍ତ ମତାମତ ଉତ୍ତମରୂପେ ପ୍ରକାଶିତ ହୋଇ ଥିଲା । ବିହାରର ସରକାର ମଧ୍ୟ ସେହି ରିପୋର୍ଟ ଅନୁସାରେ ଗୋଟିଏ ଆଇନ ପାଶ୍ କଲେ । ଆଇନଟିର ନାମ ହେଲା ଚମ୍ପାରଣର କୃଷି ଆଇନ । ଏହି ଆଇନ ପାଶ୍ ହୋଇଗଲା ପରେ ଦରିଦ୍ର କୃଷକମାନଙ୍କର ଦୁଃଖ କଷ୍ଟ ବହୁତ ପରିମାଣରେ ହ୍ରାସ ହୋଇଥିଲା । ବିହାରର ପ୍ରଧାନ

ପ୍ରଧାନ ନେତାମାନେ ଯାହା ଅନେକ ଦିନରୁ ଚେଷ୍ଟା କରି କିଛି କରି ପାରୁ ନ ଥିଲେ, ମହାତ୍ମା ଗାନ୍ଧୀ ତାହା ସମ୍ପନ୍ନ କରି ଦେଶବାସିମାନଙ୍କର ଅଶେଷ, ଆଦର ଓ ଶ୍ରଦ୍ଧାର ପାତ୍ର ହୋଇଗଲେ ।



## ଦ୍ୱାଦଶ ଅଧ୍ୟାୟ ।

ଚମ୍ପାରଣ କମିଟିର କାମ ଶେଷ ହେଲା । ଲୋକମାନଙ୍କର ଦୁଃଖ କଷ୍ଟ ହ୍ରାସ ହେଲା, ତଥାପି ସେଠାରେ ଟିକିଏ ଗୋଳଯୋଗର ଭୟ ଥାଏ । ନୀଳକୋଠି ସାହେବମାନେ ବଡ଼ ବିରକ୍ତ ହୋଇଥିଲେ । ଏପରି ଅବସ୍ଥାରେ ମହାତ୍ମା ଗାନ୍ଧୀ ଜିଲା ଛାଡ଼ିଗଲେ କାଳେ କିଛି ଗୋଳମାଳ ହେବ, ଏହି ଆଶଙ୍କାରେ ସେ ଜିଲା ଛାଡ଼ିଲେ ନାହିଁ । ସେହିଠାରେ ଗୋଟିଏ ଆଶ୍ରମ କରି ପ୍ରାୟ ଛ ମାସ ପର୍ଯ୍ୟନ୍ତ ଅବସ୍ଥାନ କଲେ । ଏହି ଛ ମାସ ମଧ୍ୟରେ ସେଠାରେ ଅନ୍ୟାନ୍ୟ ଅନେକ କାର୍ଯ୍ୟ ଆରମ୍ଭ କରିଥିଲେ । ପାଠଶାଳା ବସାଇଲେ । ରାତିରେ ଦିନରେ ସବୁବେଳେ ଲୋକେ ଆସି ପାଠ ପଢ଼ିଲେ । ରୋଗିମାନଙ୍କୁ ମଧ୍ୟ ବିନାମୂଲ୍ୟରେ ଔଷଧ ବିତରଣ କରାଗଲା । ଏହି କାର୍ଯ୍ୟ କରିବାପାଇଁ ଗୁଜରାଥରୁ ଅନେକ ସ୍ୱେଚ୍ଛାସେବକ ଆସି ଉପସ୍ଥିତ ହେଲେ । ସେମାନେ ଗ୍ରାମେ ଗ୍ରାମେ ବୁଲି ଲୋକମାନଙ୍କୁ ନାନା ବିଷୟରେ ଉପଦେଶ ପ୍ରଦାନ କଲେ । ଏହିପରି ଚମ୍ପାରଣ ଜିଲାରେ ଯେ କାର୍ଯ୍ୟ ହୋଇଗଲା, ତାହା ଶହେ ବର୍ଷରେ ଲୋକେ କରି ପାରିଥାନ୍ତେ କି ନାହିଁ ସନ୍ଦେହ । ସେତେବେଳେ ମହାତ୍ମା ଗାନ୍ଧୀ ଏହି କାର୍ଯ୍ୟ କରିଥିଲେ ବୋଲି ବିହାର ଲୋକେ ଆଜି ଅସହଯୋଗ ଆନ୍ଦୋଳନରେ ଏତେ ଅଗ୍ରସର ହୋଇଅଛନ୍ତି ।

ସେ ଯାହାହେଉ ମହାତ୍ମା ଗାନ୍ଧୀ ସେତେବେଳେ କେବଳ ଏତିକି କାର୍ଯ୍ୟରେ ସନ୍ତୁଷ୍ଟ ନ ଥିଲେ । ଦେଶର ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ ତାହାଙ୍କର

ଦୃଷ୍ଟି ଆକର୍ଷଣ କରୁଥିଲା । ଏହି ସମୟରେ ଦେଶରେ ସ୍ୱରାଜପାଇଁ ତୁମୁଳ ଆନ୍ଦୋଳନ ଆରମ୍ଭ ହେଲା । ଶ୍ରୀମତୀ ବେସାନ୍ତଙ୍କୁ ସରକାର ଅଟକ କରି ଗୋଟାଏ ସ୍ଥାନରେ ରଖିଦେଲେ । ଏହାଙ୍କର ମୁକ୍ତିପାଇଁ ଭୀଷଣ ଆନ୍ଦୋଳନ ଦେଶର ଚାରିଆଡ଼େ ଆରମ୍ଭ ହୋଇଗଲା । ଏହି ଆନ୍ଦୋଳନରେ ବିଲାତର ସରକାର ମଧ୍ୟ ଟିକିଏ ଚମକି ଉଠିଲେ । ଭାରତସଚିବ ମଣ୍ଟେଗୁ ସାହେବ ସବୁ କଥାର ତଥ୍ୟ ଜାଣିବାସକାଶେ ଏହି ଦେଶକୁ ଆଗମନ କଲେ । ଏହି ସମୟରେ ମହାତ୍ମା ଗାନ୍ଧୀ ଯେଉଁ କାର୍ଯ୍ୟ କରିଥିଲେ, ତାହା ଦେଶର ବଡ଼ ଉପକାର କରିଥିଲା । ସେ ଦେଶୀ ଭାଷାରେ ସ୍ୱରାଜ୍ୟର ଅର୍ଥ ବୁଝାଇ ଗୋଟିଏ ପତ୍ର ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ବୁଲାଇ ଲୋକମାନଙ୍କର ତହିଁରେ ସ୍ୱାକ୍ଷର କରାଇଲେ । ଶେଷରେ ସେହି ସ୍ୱାକ୍ଷରିତ ପତ୍ର ମଣ୍ଟେଗୁ ସାହେବଙ୍କ ନିକଟରେ ଦାଖଲ କରାଇଥିଲେ । ଏହିପ୍ରକାର ସ୍ୱାକ୍ଷର କରାଇବାଦ୍ୱାରା ସର୍ବସାଧାରଣଙ୍କୁ ସ୍ୱରାଜ୍ୟ ବିଷୟରେ ଅନେକ ନୂଆ କଥା ଜଣାଗଲା । କେବଳ ଏତିକି ନୁହେ । ଏହି ସ୍ୱାକ୍ଷରିତ ନଥି-ବିଡ଼ା ଦେଖି, ମଣ୍ଟେଗୁ ସାହେବ ଭଲକରି ବୁଝି ପାରିଥିଲେ ଯେ, ଭାରତର ଲୋକେ ପ୍ରକୃତରେ ବର୍ତ୍ତମାନ ସ୍ୱରାଜ୍ୟ ପାଇବାକୁ ବଡ଼ ଇଚ୍ଛୁକ । ଏମାନଙ୍କୁ କିଛି ନ ଦେଲେ ଆଉ ସମ୍ଭାଳି ହେବ ନାହିଁ ।

ଏହା ଛଡ଼ା ମହାତ୍ମା ଗାନ୍ଧୀ ମଧ୍ୟ ଆହୁରି ଅନେକ କାର୍ଯ୍ୟ କରିଥିଲେ । ସେହି ସମୟରେ ସେ ଗୁଜରାଟର ଶିକ୍ଷାପରିଷଦ୍ ଓ ରାଜନୈତିକ ପରିଷଦ୍ ଏହି ଉଭୟ ଅନୁଷ୍ଠାନର ସଭାପତି ପଦରେ ନିର୍ବାଚିତ ହୋଇଥିଲେ । କୌଣସି ଗୋଟିଏ ଅନୁଷ୍ଠାନର ସଭାପତି ହେଲେ ସାଧାରଣତଃ ଲୋକେ ଗୋଟିଏ ବକ୍ତୃତା ଭଲକରି ଦେଇଦେଲେ ସେମାନଙ୍କର କାମ ଶେଷ ହେଲା ବୋଲି ମନେ କରନ୍ତି । କିନ୍ତୁ ମହାତ୍ମା ଗାନ୍ଧୀଙ୍କର କାର୍ଯ୍ୟ କେବଳ ବକ୍ତୃତାରେ ଶେଷ ହେଲା ନାହିଁ । ସେ ଏହି ଉଭୟ ଅନୁଷ୍ଠାନର ସଭାପତି ପଦରେ ନିଯୁକ୍ତ ହୋଇ ଗୁଜରାଟରେ କିପରି ଜାତୀୟ ଜୀବନ ଫୁଟି ଉଠିବ,

ସେହି ଚେଷ୍ଟାରେ ବ୍ରତୀ ହେଲେ । ତାହାଙ୍କର ଏହି ଯେ ଚେଷ୍ଟା ଆରମ୍ଭ ହେଲା, ତାହାର ଫଳ କଣ ହୋଇଅଛି, ତାହା ପାଠକମାନେ ଗୁଜରାଟର ବର୍ତ୍ତମାନ ଦେଶହିତକର କାର୍ଯ୍ୟକଳାପରୁ ଉତ୍ତମରୂପେ ବୁଝି ପାରିବେ । ସେ ବିଷୟରେ କିଛି ଲେଖିବା ଅନାବଶ୍ୟକ ।

ଗୁଜରାଟ ପ୍ରଦେଶର ରାଜଧାନୀ ଅହମଦାବାଦ ସହର, ଏହା ଆଗରୁ ପାଠକମାନଙ୍କୁ ଜଣାହୋଇଅଛି । ଏହିଠାରେ ଅନେକ କଳକାରଖାନା ଅଛି । ୧୯୧୮ ଖ୍ରୀଷ୍ଟାବ୍ଦରେ ଏହି କଳକାରଖାନାରେ କାମ କରୁଥିବା ଶ୍ରମଜୀବିଗଣ କାମ ବନ୍ଦ କରି ଦେଲେ । ଏପରି କାମ ବନ୍ଦ କରି ଦେଇ ବସିବାର ଅଭିପ୍ରାୟ ଏହି ଯେ, ସେମାନେ ସେମାନଙ୍କର ବେତନ ବୃଦ୍ଧିପାଇଁ ଅନେକଦିନରୁ ଆପତ୍ତି କରୁଥିଲେ । ମାଲିକମାନେ ସେମାନଙ୍କର ଗୁହାରି ନ ଶୁଣିବାରୁ ଅବଶେଷରେ ସେମାନେ କାର୍ଯ୍ୟ ଛାଡ଼ିଦେଇ ବାହାରି ଆସିଲେ । କେବଳ କାର୍ଯ୍ୟ ଛାଡ଼ିଦେଲେ ତାହା ନୁହେ । ଏହି ସମୟରେ ଅହମଦାବାଦ ସହରରେ ମହାବିପ୍ଳବର ସମ୍ଭାବନା ହୋଇପଡ଼ିଲା । ଗରିବ ଲୋକେ କାମ ଛାଡ଼ିଦେଲେ ସିନା, ସେମାନଙ୍କ କଥା ଶୁଣୁଅଛି କିଏ ? ଏହି ସମୟରେ ମହାତ୍ମା ଗାନ୍ଧୀ ଏହି ଗରିବ ଲୋକମାନଙ୍କର ପକ୍ଷ ନେଇ ମାଲିକମାନଙ୍କ ସହି ଲଢ଼ିବାକୁ ପ୍ରସ୍ତୁତ ହେଲେ । ଏହି କଳକାରଖାନାର ମାଲିକମାନଙ୍କ ମଧ୍ୟରୁ କେତେକ ମହାତ୍ମା ଗାନ୍ଧୀଙ୍କର ଭକ୍ତ ଓ କେତେକ ପ୍ରିୟ ବନ୍ଧୁ ଅଟନ୍ତି । ଅନେକେ ମଧ୍ୟ ତାହାଙ୍କର ଆଶ୍ରମକୁ ଶତ ଶତ ଟଙ୍କା ସାହାଯ୍ୟ କରିଅଛନ୍ତି । ତାହାହେଲେ ମଧ୍ୟ ମହାତ୍ମା ଗାନ୍ଧୀ ସେ ସବୁ କିଛି ନ ଭାବି ଗରିବ ଲୋକମାନଙ୍କୁ ସାହାଯ୍ୟ କରିବାପାଇଁ ସେମାନଙ୍କ ବିଷୟରେ ଠିଆ ହୋଇଥିଲେ ।

ଏହିପରି ହରତାଳ କିଛିଦିନ ଚାଲିଲା । ଲୋକେ କାର୍ଯ୍ୟ ବନ୍ଦ କରି ଖାଲି ବସି ରହିଛନ୍ତି । ସେମାନଙ୍କର ଆଉ କିଛି ରୋଜଗାର ନାହିଁ । ବିନା

ରୋଜଗାରରେ କେତେଦିନ ଚଳିବେ ? ଲୋକେ ଶେଷରେ ବଡ଼ ଅଧୀର ହୋଇପଡ଼ିଲେ । ଏହି ସମୟରେ କେହି ଜଣେ ବ୍ୟକ୍ତି ମହାତ୍ମା ଗାନ୍ଧୀଙ୍କୁ ଲକ୍ଷ୍ୟକରି କହିଥିଲେ ଯେ, ଗରିବ ଲୋକଗୁଡ଼ିକ ମିଛରେ କାହିଁକି ଭୋକରେ ମରୁଛନ୍ତି ? ସେମାନଙ୍କ କଥା କିଏ ଶୁଣିବ । ଯେ ସେମାନଙ୍କର ନେତା, ସେ ବେଶ୍ ସୁଖରେ ଖାଇ ପିଇ ମଟର ଚଢ଼ି ବୁଲୁଛନ୍ତି, ସେମାନଙ୍କ କଥା ବୁଝୁଛି କିଏ ? ଇତ୍ୟାଦି । ମହାତ୍ମା ଗାନ୍ଧୀଙ୍କର କାନରେ ଏହା ବାଜିଲା । ସେ ହଠାତ୍ ସଂକଳ୍ପ କରି ବସିଲେ । ଯେ ପର୍ଯ୍ୟନ୍ତ ଏହି ଗରିବ ଲୋକଙ୍କର ଆପତ୍ତି ମୀମାଂସା ହୋଇ ନାହିଁ, ଯେ ପର୍ଯ୍ୟନ୍ତ ସେମାନେ କାର୍ଯ୍ୟ ବନ୍ଦ କରିଥିବା ହେତୁ ଖାଇବାକୁ ହଇରାଣ ହେଉଥିବେ, ସେ ପର୍ଯ୍ୟନ୍ତ ସେ ଅନ୍ନ ଜଳ କିଛି ଗ୍ରହଣ କରିବେ ନାହିଁ ଏହି ପ୍ରତିଜ୍ଞା ପରେ ମହାତ୍ମା ଗାନ୍ଧୀ ପ୍ରତ୍ୟହ ଗୋଟିଏ ଗୋଟିଏ ସଭା କରି ଲୋକମାନଙ୍କୁ ନାନା କଥା ବୁଝାଇବାକୁ ଲାଗିଲେ । ସେମାନେ କିପରି ରହିବେ, କିପରି ଚଳିବେ, କିପରି ଅନ୍ୟାନ୍ୟମାନଙ୍କ ସହି ବ୍ୟବହାର କରିବେ, ଇତ୍ୟାଦି ବିଷୟ ନେଇ ଅନେକ ଉପଦେଶ ଦେଉଥାନ୍ତି । ଏହିପରି ସାତ ଦିନ ବିତିଗଲା । ମାଲିକମାନେ ତଥାପି କିଛି ଶୁଣିଲେ ନାହିଁ । ଶୁଣିବେ ବା କିପରି ? ଯେ ଅନ୍ୟାୟ କରୁଥାଏ, ସେ ତାହାର ଅନ୍ୟାୟକୁ ସ୍ୱୀକାର କରି ନ୍ୟାୟ କରିବା କଣ ସହଜ କଥା ? ସେ ଯାହାହେଉ ମହାତ୍ମା ଗାନ୍ଧୀ ଏହିପରି ଉପବାସ ରହିବାରେ ଦେଶମୟ ଗୋଳମାଳ ଚହଳ ପଡିଗଲା । ଶେଷରେ ସରକାର ମଧ୍ୟ ଆସି ମଝିରେ ପଡି ସବୁ ନିଷ୍ପତ୍ତି କରିଦେଲେ । ମହାତ୍ମା ଗାନ୍ଧୀ ଓ ଦରିଦ୍ର କୁଲିମାନଙ୍କର ଜୟ ହେଲା । ସେମାନେ ଯାହା ଦରମା ପାଉଥିଲେ, ତଦପେକ୍ଷା ଅଧିକ ପାଇଲେ । ଏକ ସପ୍ତାହ କାଳ ଉପବାସ ପରେ ମହାତ୍ମା ଗାନ୍ଧୀ ଅନ୍ନ ଜଳ ଗ୍ରହଣ କରିଥିଲେ ।

ଏହି ବର୍ଷ ଗୁଜରାଟ ପ୍ରଦେଶର ଖେଡ଼ା ନାମକ ଗୋଟିଏ ଜିଲାରେ ମରୁଡ଼ି ହେଲା । ସେ ଦେଶରେ ଗୋଟିଏ ନିୟମ ଅଛି ଯେ, କ୍ଷେତ ଚୁରିଅଣା ହେଲେ ସରକାର ଖଜଣା ଛାଡ଼ ଦେବେ । ଏହି ନିୟମ ବଳରେ ଲୋକେ

ସରକାରଙ୍କ ନିକଟରେ ଖଜଣା ଛାଡ଼ ପାଇବାପାଇଁ ଆପତ୍ତି କଲେ । ଲୋକେ ଯେତେ ଚେଷ୍ଟା କଲେ, କାହିଁରେ କିଛି ଫଳ ହେଲା ନାହିଁ । ଦେଶରେ ଅନ୍ୟାନ୍ୟ ମୁଖିଆ ଲୋକମାନେ ମଧ୍ୟ ଏହି ଖେଡ଼ା ଜିଲାର ଲୋକମାନଙ୍କପାଇଁ ବହୁତ ଚେଷ୍ଟା କଲେ। ସେମାନେ ମଧ୍ୟ ବିଫଳପ୍ରଯତ୍ନ ହେଲେ । ସରକାର କାହାରି କଥା କିଛି ନ ଶୁଣି ଖଜଣା ଆଦାୟ କରିବାରେ ଲାଗିଲେ । ଶେଷରେ ପ୍ରଜାମାନେ ବାଧ୍ୟ ହୋଇ ମହାତ୍ମା ଗାନ୍ଧୀଙ୍କର ଆଶ୍ରୟ ଲୋଡିଲେ । ସେ ତ ସବୁବେଳେ ଦରିଦ୍ରର ବନ୍ଧୁ । ଦରିଦ୍ରର ଦୁଃଖର କାହାଣୀ ଶୁଣିଲେ ତାହାଙ୍କର ହୃଦୟ ତରଳିଯାଏ । ସେ ଏକଥା ଶୁଣିବାମାତ୍ରେ ଖେଡ଼ା ଜିଲାରେ ଉପସ୍ଥିତ ହେଲେ ।

ସେଠାରେ ଉପସ୍ଥିତ ହୋଇ ସେ ପ୍ରଥମେ ଗ୍ରାମେ ଗ୍ରାମେ ବୁଲି ଲୋକମାନଙ୍କର ପ୍ରକୃତ ଅବସ୍ଥା ତଦନ୍ତ କଲେ । ଏହିପରି ତଦନ୍ତ କରିବାରେ ଜଣାଗଲା ଯେ, ସେ ଜିଲାରେ ସେ ବର୍ଷ ମୋଟାମୋଟି ଯେ ଫସଲ ହୋଇଥିଲା, ତାହା ଚାରିପଣ ମଧ୍ୟ ହେବ ନାହିଁ । ଏହା ମହାତ୍ମା ଗାନ୍ଧୀ ସରକାରଙ୍କୁ ଜଣାଇଲେ । ପ୍ରଥମେ ସରକାର କର୍ମଚାରୀମାନେ କହୁଥିଲେ ଯେ, ଫସଲ ବାରପଣ ହୋଇଅଛି । ବର୍ତ୍ତମାନ ସେ କଥାକୁ ବଦଳାଇ ପୁଣି କହିଲେ ଯେ, ଫସଲ ସାତପଣ ହୋଇଅଛି । ଏଥିରେ ମହାତ୍ମା ଗାନ୍ଧୀ ଏକମତ ହେଲେ ନାହିଁ । ସେ ନିଜେ ଆଖିରେ ଯାହା ଦେଖିଲେ, ତାହା ନ ମାନି ଅନ୍ୟ ଲୋକଙ୍କ କଥା ମାନିବେ କିପରି ? ମହାତ୍ମା ଗାନ୍ଧୀ ସରକାରଙ୍କୁ ଦୁଇଟି କଥା କହିଥିଲେ । ପ୍ରଥମ କଥା ଏହି ଯେ ସରକାର ଲୋକମାନଙ୍କ କଥାରେ ବିଶ୍ୱାସ କରି ଯାହା କରିବାର କଥା ତାହା କରନ୍ତୁ । ତାହା ନ ହେଲେ, ସରକାରଙ୍କର ଲୋକ-ମତରେ ବିଶ୍ୱାସ ନ ଥିଲେ ଆଉ ଗୋଟିଏ ଉପାୟ ସରକାର କରି ପାରନ୍ତି । ତାହା ଏହି ଯେ ଗୋଟିଏ କମିଟି ଗଠିତ ହେଉ, ତହିଁରେ ସରକାରଙ୍କ ତରଫରୁ ଓ ଲୋକମାନଙ୍କ ତରଫରୁ ଲୋକ ରହି ତଦନ୍ତ କରନ୍ତୁ । ଏହି କମିଟି ତଦନ୍ତ କଲା ପରେ ଯେଉଁ ମନ୍ତବ୍ୟ ଦେବେ, ସରକାର ତଦନୁସାରେ କାର୍ଯ୍ୟ କରିବେ ।

କିନ୍ତୁ ସରକାର ଏ କଥା ପ୍ରତି କର୍ଣ୍ଣପାତ କଲେ ନାହିଁ । କର୍ଣ୍ଣପାତ ବା କାହିଁକି କରିବେ ? ଖଜଣା ଗଣ୍ଡାକ କୌଣସି ପ୍ରକାରେ ପାଇଲେ ତାଙ୍କର କାର୍ଯ୍ୟ ଶେଷ । ସୁତରାଂ ସେ ଆଉ କିଛି ନ ବିଚାରି ଜୋର କରି ଖଜଣା ଅଦାୟ କରିବାକୁ ଲାଗିଲେ । ଏହା ଦେଖି ଗାନ୍ଧୀ ଆଉ ଗୋଟିଏ ପ୍ରସ୍ତାବ ସରକାରଙ୍କ ଆଗରେ ଉପସ୍ଥାପିତ କଲେ । ସେ କହିଲେ ଯେ, ଖେଡ଼ା ଜିଲାରେ ଯେଉଁ ଗ୍ରାମମାନ ଛ ପଣ ଫସଲ କାଟିଅଛନ୍ତି, ସେମାନେ ଖଜଣା ଦିଅନ୍ତୁ । ବାକି ସମସ୍ତଙ୍କ ଅର୍ଦ୍ଧେକ ଖଜଣା ଛାଡ଼ ଦିଆଯାଉ । ଏହା ଛଡ଼ା ଯେଉଁମାନଙ୍କର ଖଜଣା ଦେବାକୁ ବଳ ଅଛି ସେମାନେ ମଧ୍ୟ ପୂରା ଖଜଣା ଦିଅନ୍ତୁ । ଏହା ହେଲେ ମହାତ୍ମା ଗାନ୍ଧୀ ନିଜେ ବୁଲି ଖଜଣା ଅଦାୟ କରିବାରେ ସରକାରଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । ଏହି ପ୍ରସ୍ତାବ ମଧ୍ୟ ସରକାର ଶୁଣିଲେ ନାହିଁ । ଶେଷରେ ନିରୁପାୟ ହୋଇ ମହାତ୍ମା ଗାନ୍ଧୀଙ୍କୁ ସତ୍ୟାଗ୍ରହ ପନ୍ଥାର ଆଶ୍ରୟ ନେବାକୁ ପଡ଼ିଲା ।

ଏହା ପରେ ସେ ଘୋଷଣା କରି ଦେଲେ ଯେ, ଖେଡ଼ା ଜିଲାରେ କେହି ଖଜଣା ଦେବେ ନାହିଁ । ସରକାରଙ୍କର ଯାହା ଇଚ୍ଛା ତାହା ସେ କରନ୍ତୁ । ଲୋକମାନେ କିଛି ନ କହି ସେ ସବୁ ନୀରବରେ ସହ୍ୟ କରନ୍ତୁ । ଏହି ଘୋଷଣାଟି ପ୍ରଚାର ହୋଇଗଲା ପରେ ଖେଡ଼ା ଜିଲାର ଲୋକେ ମାତି ଉଠିଲେ । ହଜାର ହଜାର ଲୋକ ଆସି ମହାତ୍ମା ଗାନ୍ଧୀଙ୍କ ନିକଟରେ ଶପଥ କରିଗଲେ ଯେ, ସେମାନେ କେହି ଆଉ ଖଜଣା ଦେବେ ନାହିଁ । ଏହା ଦେଖି ସରକାରକର୍ମଚାରୀମାନଙ୍କର କ୍ରୋଧର ସୀମା ରହିଲା ନାହିଁ । ସେମାନେ ଯେପରି ପାରିଲେ ସେପରି ଖଜଣା ଅଦାୟ କରିବାକୁ ଲାଗିଲେ । ଲୋକଙ୍କର ଘର, ଦ୍ୱାର, ଜମି, ବାଡ଼ି ସବୁ ନିଲାମ ଡକା ହେଲା । ଶହ ଶହ ଟଙ୍କା ମୂଲ୍ୟର ପଦାର୍ଥ ପାଞ୍ଚ ଟଙ୍କା ଛଅ ଟଙ୍କାରେ ନିଲାମ ହୋଇଗଲା । ପ୍ରଥମେ ଲୋକେ ମନେ କରିଥିଲେ ଯେ, ସେମାନେ ନିଜ ନିଜ ଭିତରେ ନିଲାମ ଧରିବେ ଏବଂ ପରେ ସେ ମାଲ ଯାହାର ତାକୁ ଫେରାଇ ଦେବେ । କିନ୍ତୁ

ଏହି ନୀତିକୁ ମହାତ୍ମା ଗାନ୍ଧୀ ପସନ୍ଦ କଲେ ନାହିଁ । ସେ କହିଲେ ଯେ, ଆମ୍ଭେମାନେ ନ୍ୟାୟ ଓ ସତ୍ୟପାଇଁ ଲଢ଼ାଇ କରୁଥାଉଁ । ଏପରି ଲୁଚାଇ କୌଣସି କାମ କରିବା ସତ୍ୟାଗ୍ରହୀ ପକ୍ଷରେ ଶୋଭନୀୟ ନୁହେଁ । ଏହା ଛଡ଼ା ଆମ୍ଭେମାନେ ଯଦି ଏପରି ଫସଲ ଧରିବା, ତେବେ ସରକାରଙ୍କର ତହିଁରେ କିଛି କ୍ଷତି ନାହିଁ । ଫସଲ ଧରିବାକୁ ଲୋକ ପାଇଲେ, ସେ ତ ତାଙ୍କ କାମ କରି ଚାଲିଯିବେ । ଆମ୍ଭର ସେଥିରେ ଲାଭ କଣ ?

ଖେଡ଼ା ଜିଲାରେ ଏହିପରି ସତ୍ୟାଗ୍ରହ ଲଢ଼ାଇ ଚାଲିଲା । ଲୋକେ ଆନନ୍ଦରେ ସବୁ କଷ୍ଟ ସହ୍ୟ କଲେ ସରକାର କର୍ମଚାରୀମାନେ ଏହି ଆନ୍ଦୋଳନକୁ ବନ୍ଦ କରିବାପାଇଁ ପ୍ରାଣପଣ ଚେଷ୍ଟା କଲେ, ଲୋକଙ୍କୁ ଡରାଇ ଧମକାଇ ସ୍ଥାନବିଶେଷରେ ଖଜଣା ଅଦାୟ କରିନେଲେ । ଗୋରୁ ମଇଁଷି ଇତ୍ୟାଦି ଯାହା ପାଇଲେ ସେ ସବୁ ବାନ୍ଧି ନେଇଗଲେ । ଏହିଠାରେ ଗୋଟିଏ ବିଶେଷ ଘଟଣା ଘଟିଥିଲା । ଘଟଣାଟି ଏହି ଯେ, ଗୋଟିଏ ଲୋକର କେତେଗୁଡ଼ିଏ ଗାଈ ମଇଁଷି ଥିଲେ । ସରକାର କର୍ମଚାରୀମାନେ ସେହି ଗ୍ରାମରେ ଉପସ୍ଥିତ ହେବାର ଦେଖି ଉକ୍ତ ଲୋକଟି ତାହାର ସବୁ ଗାଈ ମଇଁଷିକୁ ଫିଟାଇ ଦେଲା । ଏ କଥା ମହାତ୍ମା ଗାନ୍ଧୀ ଶୁଣି ପାରି ସେ ଲୋକଟିକୁ ଭର୍ତ୍ସନା କଲେ । ଏହା ପରେ ସମସ୍ତଙ୍କୁ ଜଣାଇଦେଲେ ଯେ, ଏପରି କାର୍ଯ୍ୟ ଯେପରି ଆଉ କେହି ନ କରନ୍ତି । ସରକାର କର୍ମଚାରୀମାନେ ଯେଉଁ ଗ୍ରାମରେ ଉପସ୍ଥିତ ହେବେ, ସମସ୍ତେ ସେମାନଙ୍କୁ ଆଦର କରିବେ । ଗୋରୁ ମଇଁଷି ଯାହା ସେ ନିଲାମ କରିବାକୁ ଚାହିଁବେ, ତାହା ଆଣି ସେମାନଙ୍କ ନିକଟରେ ହାଜର କରିଦେବେ । କେହି ଯେପରି ସରକାର କର୍ମଚାରୀମାନଙ୍କ ପ୍ରତି କୌଣସିପ୍ରକାର ଅଭକ୍ତି ନ ଦେଖାନ୍ତି, ସେଥି ପ୍ରତି ସମସ୍ତଙ୍କୁ ସାବଧାନ ହେବାକୁ ହେବ ।

ଜଳନ୍ତା ନିଆଁରେ ପାଣି ଢାଳି ଦେଲେ ଯେପରି ନିଆଁ ଲିଭି ଯାଇ ତାହାର ତେଜ କମିଯାଏ, ସେହିପରି ଏହି ଘଟନାଟି ସରକାର କର୍ମଚାରୀ-

ମାନଙ୍କର କ୍ରୋଧର ତେଜକୁ ଶାନ୍ତ କରି ଦେଲା । ସେ ଯେଉଁଠାକୁ ଯାଉଥିଲେ, ଲୋକେ ତାଙ୍କୁ ବଡ଼ ସ୍ନେହ ଓ ଆଦର କରୁଥିଲେ । କିନ୍ତୁ ଖଜଣା ଦେବାକୁ କହିଲେ ତାହା କେହି ଶୁଣୁ ନ ଥିଲେ । ଏପରି ଭକ୍ତି ଓ ଆଦର ପାଇ ଓ ଲୋକମାନଙ୍କର ଦୁଃଖ କଷ୍ଟ ଦେଖି ସେମାନଙ୍କର ହୃଦୟ ମଧ୍ୟ ଟିକିଏ ତରଳିଗଲା । ଲୋକମାନଙ୍କ ଉପରେ ଅତ୍ୟାଚାର କରିବାକୁ ଆଉ ସେମାନଙ୍କର ହାତ ଚଳିଲା ନାହିଁ । କଣ କରିବେ, ଶେଷରେ ସରକାରଙ୍କୁ ବାଧ୍ୟ ହୋଇ ଲୋକମାନଙ୍କର କଥା ଶୁଣିବାକୁ ପଡ଼ିଲା । କଲେକ୍ଟର ସାହେବ ମହାତ୍ମା ଗାନ୍ଧୀଙ୍କୁ ଡକାଇ କହି ଦେଲେ ଯେ, ଯେଉଁମାନଙ୍କର ଖଜଣା ଦେବାକୁ ବଳ ଅଛି, ସେମାନେ ଦିଅନ୍ତୁ । ଯେଉଁମାନଙ୍କର ବଳ ନାହିଁ, ସେମାନେ ଆଗାମୀ ବର୍ଷ ମଧ୍ୟରେ ମଧ୍ୟ ଦେଇ ପାରନ୍ତି । କିନ୍ତୁ ଏହା ସେମାନଙ୍କର ବଳ ଓ ଇଚ୍ଛା ଉପରେ ନିର୍ଭର କରେ । ଏହିଠାରେ ଖେଡ଼ା ଜିଲ୍ଲାରେ ସତ୍ୟାଗ୍ରହ ଲଢ଼ାଇ ଶେଷ ହେଲା । ମହାତ୍ମା ଗାନ୍ଧୀ ଜୟ କରି ଆଶ୍ରମକୁ ଫେରି ଆସିଲେ । ଖେଡ଼ା ଜିଲ୍ଲାର ଲୋକମାନଙ୍କର ଦୁଃଖ ସେହି ଦିନଠାରୁ ବହୁ ପରିମାଣରେ ହ୍ରାସ ହେଲା । ଦ୍ୱିତୀୟ ଥର ସତ୍ୟ ଓ ଅହିଂସାର ଜୟପତାକା ଭାରତବର୍ଷରେ ଉଡ଼ିଲା ।

ଖେଡ଼ା ଜିଲ୍ଲାରେ ଏହି ସତ୍ୟାଗ୍ରହ ଲଢ଼ାଇ ଚାଲୁଥିଲାବେଳେ ଦିଲ୍ଲୀ ସହରରେ ବଡ଼ ଲାଟ ସାହେବ ଗୋଟିଏ ଯୁଦ୍ଧ କନ୍‌ଫରେନ୍ସ ( War conforence ) ବସାଇଥିଲେ । ସେତେବେଳକୁ ଜର୍ମାନୀ ବରାବର ଯୁଦ୍ଧରେ ଜୟ କରୁଥାଏ । ଶେଷରେ ଭାରତ ଉପରେ କାଳେ ଆସି ଆକ୍ରମଣ କରିବ, ଏହି ଭୟ ସମସ୍ତଙ୍କ ମନରେ ଜାତ ହେଲା । ଭାରତ ଉପରେ କିଛି ବିପଦ ପଡ଼ିଲେ କଣ କରିବାକୁ ହେବ, ତାହା ବିଚାର କରିବାପାଇଁ ଏହି କନ୍‌ଫରେନ୍ସ ବସିଥିଲା । ସେଠାକୁ ଲାଟ, ଛୋଟ ଲାଟ, କମିଶନର ଇତ୍ୟାଦି ବଡ଼ ବଡ଼ ହାକିମମାନେ ଯାଇଥିଲେ । ଏମାନଙ୍କ ବ୍ୟତୀତ ଦେଶରେ ଯେତେ ବଡ଼ ବଡ଼ ରାଜା ମହାରାଜା ସବୁ ଅଛନ୍ତି, ସେମାନେ ମଧ୍ୟ ନିମନ୍ତ୍ରିତ

ହୋଇଥିଲେ । ମହାତ୍ମା ଗାନ୍ଧୀ ମଧ୍ୟ ସେଠାକୁ ନିମନ୍ତ୍ରିତ ହୋଇଥିଲେ । ଏହି ସଭା ଦିଲ୍ଲୀରେ ଦୁଇଦିନ ବସିଥିଲା । ଏହି ସଭା ଯେ କେଡ଼େ ବଡ଼ ଓ ଗୁରୁତର, ତାହା ପାଠକେ ବିଚାର କଲେ ଉତ୍ତମରୂପେ ବୁଝି ପାରିବେ ।

ମହାତ୍ମା ଗାନ୍ଧୀ ପ୍ରଥମ ଦିନ ସଭାରେ ଉପସ୍ଥିତ ହୋଇ ହଠାତ୍ ସଭା ଗୃହ ଛାଡ଼ି ଚାଲି ଆସିଲେ । ଏହାର କାରଣ କାହାରିକୁ କିଛି ଜଣା ନାହିଁ । ଏଡ଼େ ବଡ଼ ବଡ଼ ରାଜା ମହାରାଜାମାନେ ଯହିଁ ବସିଅଛନ୍ତି । ଭାରତର ହର୍ତ୍ତା କର୍ତ୍ତା ବଡ଼ ଲାଟ ସାହେବ ଅଛନ୍ତି । ଏହି ସଭା ଛାଡ଼ି ଚାଲି ଆସିବା କେଡ଼େ ଗୁରୁତର ବିଷୟ ତାହା ଟିକିଏ ଭାବିଲେ ସମସ୍ତେ ବୁଝି ପାରିବେ । କିନ୍ତୁ ଗାନ୍ଧୀ କାହାକୁ ଡରିବାର ଲୋକ ନୁହନ୍ତି । ସେ ଯେଉଁଠାରେ ନ୍ୟାୟ ଓ ସତ୍ୟର ଟିକିଏ ଅବମାନନା ଦେଖିବେ, ସେଠାରେ ସେ କାହାରି ମୁହଁକୁ ଚାହିଁବେ ନାହିଁ । ସେ ହଠାତ୍ ଏ ସଭା ଛାଡ଼ି ଆସିବାର କାରଣ ଏହି ଯେ, ସେଠାକୁ ଲୋକମାନ୍ୟ ତିଳକ, ଶ୍ରୀମତି ଆନି ବେଶାନ୍ତ ଓ ଅଲି ଭାଇମାନେ ନିମନ୍ତ୍ରିତ ହୋଇ ନ ଥିଲେ । ଗାନ୍ଧୀଙ୍କର ଆପତ୍ତି କରିବାର କଥା ଏହି ଯେ, ଦେଶରେ ଏଡ଼େ ବଡ଼ ବିଷୟ ଆଲୋଚିତ ହେଉଥିବାବେଳେ ଯେଉଁମାନେ ଦେଶର ମୁଖିଆ ଲୋକ, ସେମାନଙ୍କୁ ଗଭର୍ଣ୍ଣମେଣ୍ଟ କାହିଁକି ଡାକି ନାହାନ୍ତି । ସେମାନଙ୍କୁ ନ ଡାକିବା କଣ ଆମ୍ଭମାନଙ୍କ ପକ୍ଷରେ ଅପମାନସୂଚକ ନୁହେ ? ଯେଉଁମାନେ ଦେଶ ପାଇଁ କାର୍ଯ୍ୟ କରି କରି ଆସି ବୁଢ଼ା ହେଲେଣି, ଯେଉଁମାନଙ୍କୁ ସମସ୍ତ ଦେଶ ଦେବତା ପରି ପୂଜା କରେ, ସେମାନଙ୍କୁ ଗଭର୍ଣ୍ଣମେଣ୍ଟ ଖାତିରରେ ଆଣିବେ ନାହିଁ, ଏହା ବୁଝିପାରି ସେ ସଭା ସ୍ଥାନ ଛାଡ଼ି ଆସିଲେ ।

ମହାତ୍ମା ଗାନ୍ଧୀ ଏହିପରି ସଭା ସ୍ଥାନ ଛାଡ଼ି ଚାଲି ଆସିବାରୁ ବଡ଼ଲାଟ ସେହି ଦିନ ଆସି ତାଙ୍କ ଦ୍ୱାରେ ଉପସ୍ଥିତ । ଗାନ୍ଧୀଙ୍କ ସହ ଦେଖା କରି ଏଣୁ ତେଣୁ ଅନେକ କହିବା ପରେ ମହାତ୍ମା ଗାନ୍ଧୀ ପରଦିନ ସଭାକୁ ଯାଇ ତାହାଙ୍କ ମନ୍ତବ୍ୟ ବ୍ୟକ୍ତ କରିବାକୁ ପ୍ରତିଶ୍ରୁତ ହେଲେ । ତହିଁ ଆରଦିନ ଯାଇ ସଭାରେ

ଦେଇଥିଲେ । ସମସ୍ତେ କୋଟ ପେଣ୍ଟାଲୁନ୍ ଜୋତା ମୋଜା ପିନ୍ଧି ସଭାକୁ ଆସିଥିଲେ, କିନ୍ତୁ ମହାତ୍ମା ଗାନ୍ଧୀ ତାହାଙ୍କର ସେହି ତନ୍ତବୁଣା ଖଦଡ଼ରୁ ଖଣ୍ଡିଏ ପିନ୍ଧିଥିଲେ । ଦେହରେ ଖଣ୍ଡିଏ କୁରୁତା ଓ ଖଣ୍ଡିଏ ଟୋପି । ଗୋଡ଼ରେ ଜୋତା ତ ନାହିଁ, ମୋଜା କୁଆଡ଼ୁ ଆସିବ ? ତାହାଙ୍କୁ ଏପରି ବେଶରେ ଦେଖି ସମସ୍ତେ ଚକିତ ହୋଇଗଲେ । ପୁଣି ଗାନ୍ଧୀ ଯେତେବେଳେ କହିବାକୁ ଠିଆ ହୁଅନ୍ତି, ସେତେବେଳେ ସେ ଇଂରେଜୀରେ ନ କହି ତାହାଙ୍କର ବକ୍ତବ୍ୟ ହିନ୍ଦିରେ ପ୍ରକାଶ କଲେ । ଏହା ଦେଖି ସଭାର ସମସ୍ତେ ତାଟକା । ସେ ଯାହା କହିଥିଲେ, ତାର ସାର ମର୍ମ ଏହି,"ବଡ଼ଲାଟ ସାହେବ ଆମ୍ଭମାନଙ୍କୁ କହୁଛନ୍ତି ବର୍ତ୍ତମାନ ଘର କଜିଆ ବନ୍ଦ କରି ସମସ୍ତେ କିପରି ଏ ବିପଦରୁ ରକ୍ଷା ପାଇବା, ତାହା ସମସ୍ତଙ୍କର ଭାବିବା ଉଚିତ । କିନ୍ତୁ ଏ କଥା ସେ ଆମ୍ଭମାନଙ୍କୁ ନ କହି ତାଙ୍କର କର୍ମଚାରୀମାନଙ୍କୁ କହନ୍ତୁ । ଚମ୍ପାରଣ ଓ ଖେଡ଼ା ଜିଲ୍ଲାରେ ଯେପରି ବ୍ୟାପାର ଘଟିଛି, ସେଥିରେ ଘର କଜିଆ ଆମ୍ଭେ ଲଗାଇ ନାହୁଁ । ଆମ୍ଭମାନଙ୍କ ଦ୍ୱାରା ଯାହା ହେବ, ଆମ୍ଭେମାନେ ତାହା ନିଶ୍ଚୟ କରିବୁଁ; କିନ୍ତୁ ସରକାର ଦେଶର ନିରୀହ ନିରୀହ ଲୋକମାନଙ୍କ ନ ବିଗିଡ଼ି କାର୍ଯ୍ୟ କରିବାକୁ ବସିଲେ କଦାପି ସେ କୃତକାର୍ଯ୍ୟ ହୋଇ ପାରିବେ ନାହିଁ । ପୁଣି ମୁସଲମାନ ଭାଇମାନଙ୍କର ଧର୍ମର କଥା ଏହି ଯୁଦ୍ଧରେ ରହିଅଛି । ସରକାର ଏ କଥା ବିଲାତର ମନ୍ତ୍ରୀମାନଙ୍କୁ ପତ୍ରଦ୍ୱାରା ଶୁଣାଇ ଦିଅନ୍ତୁ, ସେମାନଙ୍କର ଗୀର୍ଜ୍ଜା ଆଦି ସବୁ ସରକାରଙ୍କ ହାତକୁ ଆସିଲେ ସେ ତାହା କଣ କରିବେ ।" ଇତ୍ୟାଦି । ଏହା ପରେ ସଭା ଭଙ୍ଗ ହେଲା । ମହାତ୍ମା ଗାନ୍ଧୀ ଆଶ୍ରମକୁ ଫେରି ଆସି ଯୁଦ୍ଧରେ ସରକାରଙ୍କୁ ସାହାଯ୍ୟ କରିବାପାଇଁ ଗ୍ରାମେ ଗ୍ରାମେ ବୁଲି ଲୋକମାନଙ୍କୁ ବୁଝାଇଲେ । ଯୁବକମାନଙ୍କୁ ସୈନ୍ୟଶ୍ରେଣୀରେ ନାମ ଲେଖାଇ ଯୁଦ୍ଧ କରିବାପାଇଁ ଉତ୍ସାହିତ କଲେ ଏହାପରେ ତାହାଙ୍କର ଆଉ ଗୋଟିଏ କାର୍ଯ୍ୟ ମଧ୍ୟ ଆରମ୍ଭ ହେଲା ।



# ତ୍ରୟୋଦଶ ଅଧ୍ୟାୟ ।



ଦିଲ୍ଲୀ ସହରରେ ମହାତ୍ମା ଗାନ୍ଧୀ ବଡ଼ ଲାଟଙ୍କୁ କହି ଆସିଛନ୍ତି ଯେ, ଜର୍ମାନିଙ୍କୁ ଯୁଦ୍ଧରେ ହରାଇବାପାଇ ଭାରତବାସିମାନେ ନିଶ୍ଚୟ ଇଂରେଜ ସରକାରଙ୍କୁ ସାହାଯ୍ୟ କରିବେ । ତାହାଙ୍କଦ୍ୱାରା ଯେତେଦୂର ଚେଷ୍ଟା ସମ୍ଭବ, ତାହା ସେ ନିଜେ କରିବେ । ଏହି କଥା ଅନୁସାରେ ମହାତ୍ମା ଗାନ୍ଧୀ ବର୍ତ୍ତମାନ ଗୁଜରାଟ କଲାରେ ଗ୍ରାମେ ଗ୍ରାମେ ବୁଲି ସୈନ୍ୟଶ୍ରେଣୀରେ ନାମ ଲେଖାଇ ଯୁଦ୍ଧ କରିବାପାଇଁ ଦେଶର ଯୁବକମାନଙ୍କୁ ଉତ୍ସାହିତ କଲେ । ସେ ପ୍ରଚାର କଲେ ଯେ ଭାରତବାସୀ ବ୍ରିଟିଶ ସାମ୍ରାଜ୍ୟ ସହିତ ରହି ନିଜର ଉନ୍ନତି କରିବାକୁ ଚାହେଁ, ସାମ୍ରାଜ୍ୟର ଗୋଟିଏ ଅଂଶୀଦାର ହେବାକୁ ଇଚ୍ଛା କରେ । ଏହା ଯଦି ହୁଏ, ସାମ୍ରାଜ୍ୟର ବିପଦ ସମୟରେ ଭାରତବାସୀ ଚୁପ କରି ବସି ରହିବା ଉଚିତ ନୁହେ । ଜଗତର ଅନ୍ୟାନ୍ୟ ଦେଶ ଓ ଜାତିମାନଙ୍କ ତୁଳନାରେ ଭାରତବର୍ଷ ବଳ ବୀର୍ଯ୍ୟରେ ହୀନ ନୁହେ, ଏହି କଥା ପ୍ରମାଣ କରିବାର ସମୟ ବର୍ତ୍ତମାନ ଉପସ୍ଥିତ । ଏତିକିବେଳେ ଭାରତର ଯୁବକମାନେ ଉଠି ଜନ୍ମଭୂମିର ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରନ୍ତୁ ।

ମହାତ୍ମା ଗାନ୍ଧୀଙ୍କ ନିକଟରୁ ଏପରି ଉତ୍ସାହବାଣୀ ଶୁଣି ଦେଶର ଯୁବକମାନେ ଦଳ ଦଳ ହୋଇ ସୈନ୍ୟଶ୍ରେଣୀରେ ନାମ ଲେଖାଇଲେ । କିନ୍ତୁ ତାହାଙ୍କର ଏହି କାର୍ଯ୍ୟକୁ କେତେକ ଲୋକ ସମାଲୋଚନା କରିଥିଲେ । ଅନେକେ କହିବାକୁ ଲାଗିଲେ ଯେ, ମହାତ୍ମା ଗାନ୍ଧୀ ଅହିଂସା ଧର୍ମ ପ୍ରଚାର କରନ୍ତି । ସେ କିପରି ଆଜି କହୁଅଛନ୍ତି ଯେ ଯୁଦ୍ଧକ୍ଷେତ୍ରକୁ ଯାଇ ଶତ୍ରୁପକ୍ଷର ଲୋକଙ୍କୁ ସଂହାର କର । ଏହା ତାହାଙ୍କ ପକ୍ଷରେ ନିଶ୍ଚୟ ନିନ୍ଦନୀୟ । କୌଣସି ଧାର୍ମିକ ଲୋକ ଏପରି କାର୍ଯ୍ୟ କରିବାକୁ କଦାପି ଉପଦେଶ ଦେଇ ନ ପାରେ । ଇତ୍ୟାଦି ।

ଏହି ସମାଲୋଚନା ଯଥାର୍ଥ ବୋଲି ମନେ ହୁଏ । ଏହାର ଉତ୍ତରରେ ମହାତ୍ମାଜୀ କଣ କହିଥିଲେ ଏବଂ ମୁଁ ନିଜେ ତାହାଙ୍କ ନିକଟରୁ ଯାହା ଶୁଣିଛି ତହିଁର ମର୍ମ ପାଠକମାନଙ୍କ ନିକଟରେ ଜଣାଉଅଛି । ପାଠକମାନେ ଏହାର ସତ୍ୟାସତ୍ୟ ନିଜେ ଠିକ କରନ୍ତୁ । ସେ କହିଥିଲେ ଯେ, ଯେଉଁମାନେ ଅହିଂସା ଧର୍ମକୁ ମାନନ୍ତି ଏବଂ ଜୀବନର ପ୍ରତି କାର୍ଯ୍ୟରେ ଅହିଂସାବ୍ରତ ପାଳନ କରନ୍ତି, ସେମାନଙ୍କୁ ମୁଁ କଦାପି ଏହା ପ୍ରଚାର କରି ନାହିଁ । ମୁଁ ଯେତେ ପ୍ରଚାର କଲେ ସେମାନେ ମୋ କଥା ଶୁଣିବେ କାହିଁକି ? ସେ କହିଥିଲେ, ଅହିଂସା ଧର୍ମ ପାଳନ କରୁଥିବା ବ୍ୟକ୍ତିର ଧର୍ମ ଏହା ନୁହେ ଯେ, ସେ ସବୁବେଳେ ନିରୀହ ଓ ଶାନ୍ତଭାବରେ ବସି ରହିବ । ତାହାର କର୍ତ୍ତବ୍ୟ ହେଉଛି ଯେ, ଲୋକମାନଙ୍କୁ ନିର୍ଭୀକ କରାଇବ । ଲୋକମାନଙ୍କ ଭିତରେ ବଳ, ବୀର୍ଯ୍ୟ ଓ ଶୌର୍ଯ୍ୟ ଇତ୍ୟାଦି ଗୁଣ ଯଦ୍ଵାରା ବୃଦ୍ଧି ପାଏ, ତହିଁର ଯତ୍ନ କରିବ । ଆନନ୍ଦରେ ହସି ହସି ମନୁଷ୍ୟ କପରି ମରି ପାରେ, ତାହା ମଧ୍ୟ ଶିଖାଇବ । କାରଣ ଏହି ସବୁ ଗୁଣ ନ ଥିଲେ ଅହିଂସା ଧର୍ମ ପାଳନ କରିବା ସହଜ ନୁହେ । ଅହିଂସାର ମର୍ମ ହେଉଛି, ନିଜେ ମରି ଅନ୍ୟର ହିଂସାକୁ ଦୂର କରିବ । ଯେ ବ୍ୟକ୍ତି ନିଜେ ମରିବାକୁ ଶିଖି ନାହିଁ, ଯେ ବ୍ୟକ୍ତି ସବୁବେଳେ ଭୟରେ ଥରହର, ସେ ଅହିଂସାବ୍ରତ ପାଳନ କରିବାକୁ ସମର୍ଥ ନୁହେ ।

ଭାରତର ଯୁବକମାନଙ୍କୁ ଦେଖିଲେ କଣ ଦେଖାଯାଏ । ସବୁବେଳେ ସେମାନେ ଭୟରେ ଜଡ଼ସଡ଼ ହୋଇ ରହିଅଛନ୍ତି । ପ୍ରତି ପଦେ ପଦେ ସେମାନଙ୍କୁ ଲାଞ୍ଛନା ଅପମାନ ସହ୍ୟ କରିବାକୁ ପଡ଼େ । ଦୁଃଖର ବିଷୟ ଏହି ଯେ, ଏହି ଅପମାନକୁ ସେମାନେ ଚୁପ କରି ସହ୍ୟ କରନ୍ତି । ସେମାନେ ଯଦି ଅହିଂସା ଭାବରୁ ଏପରି ଚୁପ କରି ରହୁଥାନ୍ତେ, ତାହା ହେଲେ ଭାରତବର୍ଷର ଦୁର୍ଦ୍ଦଶା ଆଜି ଏପରି ହୋଇ ନ ଥାନ୍ତା । ଆଜି ଇଉରୋପର ଯୁଦ୍ଧକ୍ଷେତ୍ରରେ ମଧ୍ୟ ଏତେ ନରହତ୍ୟା ହେଉ ନ ଥାନ୍ତା । ଭାରତବାସୀ

ଏପରି ନୃଶଂସ ବ୍ୟାପାର ସବୁ ବୁଝିଶୁଣି ଚୁପ କରି ରହି ପାରନ୍ତା ନାହିଁ ତାହାର ପ୍ରାଣ ବ୍ୟାକୁଳ ହୋଇ ଉଠନ୍ତା ।

କିନ୍ତୁ ଭାରତର ଅବସ୍ଥା ଆଜି କଣ ? ଭାରତର ଯୁବକମାନଙ୍କର ମନର ଗତି କିପରି ? ସେମାନଙ୍କର ଅନ୍ତର ହିଂସାରେ ପୂରି ରହିଅଛି । ଜଗତରେ ଜୟଲାଭ କରିବାକୁ ହେଲେ, ପଶୁବଳ ଅଥବା ଶାରୀରିକ ବଳ ଏକମାତ୍ର ବଳ, ଏଥିରେ ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ । ଏପରି ବିଶ୍ୱାସ ଥିଲେ ମଧ୍ୟ କେବଳ ଭୟରେ ସେମାନେ କିଛି କରି ପାରୁ ନାହାନ୍ତି । ଏହା କରିବାକୁ ଯେଉଁ ଶିକ୍ଷା ଆବଶ୍ୟକ, ସେ ଶିକ୍ଷା ମଧ୍ୟ ସେମାନଙ୍କର ନାହିଁ । ଏପରି ଅବସ୍ଥାରେ ବର୍ତ୍ତମାନ ଯେଉଁ ସୁଯୋଗ ମିଳିଅଛି, ତାହା ଗଡିବା ସେମାନଙ୍କର ଧର୍ମ ନୁହେ । ମନୁଷ୍ୟ ଯହିଁରେ ବିଶ୍ୱାସ କରେ, ତହିଁର ଶିକ୍ଷା ଓ କାର୍ଯ୍ୟ କରିବାର ସୁବିଧା ମିଳିଲେ, ତାହା ଯଦି ସେ ଆଦର କରି ଗ୍ରହଣ ନ କରେ, ତାହାର ଆଉ ଆଶା ନାହିଁ । ଏହା ଛଡ଼ା ମନୁଷ୍ୟର ଧର୍ମ ହେଉଛି, ବିପଦ-ସମୟରେ ମନୁଷ୍ୟ ମନୁଷ୍ୟଙ୍କୁ ସାହାଯ୍ୟ କରିବ । ମୁଁ ଯେଉଁ ଉପାୟରେ ନିଜର ମଙ୍ଗଳ କରିବାକୁ ଚାହେଁ, ଯହିଁରେ ପୁଣି ମୋର ପୂର୍ଣ୍ଣ ବିଶ୍ୱାସ, ଯଦି ଅନ୍ୟର ଅଭାବ ସମୟରେ ମୁଁ ତାହା କାର୍ଯ୍ୟରେ ନ ଲଗାଏ, ମୋଠାରୁ ବଳି ସ୍ୱାର୍ଥପର ଜଗତରେ ଆଉ କିଏ ଥାଇ ପାରେ ?

ଏହି ଇଂରେଜ ସରକାରଙ୍କ ସହି ଭାରତବାସୀ ମିଳାମିଶି ରହିବାକୁ ଇଚ୍ଛା କରନ୍ତି, ଇଂରେଜ ସାମ୍ରାଜ୍ୟର ସମସ୍ତ ସୁଯୋଗ ସୁବିଧା ଭୋଗ କରିବାକୁ ଚାହାନ୍ତି । କିନ୍ତୁ ସାମ୍ରାଜ୍ୟ ପ୍ରତି ସେମାନଙ୍କର କର୍ତ୍ତବ୍ୟ ପାଳନ କରିବା ବେଳକୁ ପଛକୁ ଘୁଞ୍ଚି ରହନ୍ତି, ଏହା କଣ ସୁନ୍ଦର ? ସୁତରାଂ ମୁଁ ଆଜି ଯାହା ପ୍ରଚାର କରୁଛି, ମୋର ବିଶ୍ୱାସ ଯେ, ମୁଁ କେବଳ ଅହିଂସାଧର୍ମ ପାଳନ କରିବା ପାଇଁ ଲୋକମାନଙ୍କୁ ଶିକ୍ଷା ଦେଉଅଛି । ମୁଁ ଚାହେଁ, ଅହିଂସା ନାମ ନେଇ ଭୀରୁ, କାପୁରୁଷ ହେବା ଅପେକ୍ଷା ହିଂସାଧର୍ମ ପାଳନ କରି ବୀର ହେବା ଶ୍ରେୟ ;

ଅନ୍ୟକୁ ମାଲଦେଇ ପଠାଇ ଅନ୍ତିବାରେ ବୀରତ୍ୱ ନାହିଁ । ଯେଉଁମାନେ ପଶୁ-ବଳ ପ୍ରୟୋଗ କରନ୍ତି, ସେମାନେ ଯୁଦ୍ଧ ଶସ୍ତ୍ରକୁ ନ ଡରି ବରଂ ତାହାର ସମ୍ମୁଖରେ ଅଟଳଭାବରେ ଠିଆ ହୋଇ ରହି ସବୁ ସହ୍ୟ କରନ୍ତି, ଏହିଁରେ ସେମାନଙ୍କର ବୀରତ୍ୱ ଅଛି । ମୁଁ ଚାହେଁ, ଭାରତ ଯୁବକ ଯାହା ବିଶ୍ୱାସ କରେ, ଅନ୍ତ ସେ ତାହା ପାଳନ କରୁ । ତାହାର ଧର୍ମ ସେ ପାଳନ କରୁ, କିନ୍ତୁ ଭୀରୁ ଓ କାପୁରୁଷ ନ ହେଉ ।

ଏହି ପ୍ରକାର କାର୍ଯ୍ୟ ଅନେକ ଦିନ ଲାଗିଲା । ଏହି ସମୟରେ ତାହାଙ୍କୁ କଠୋର ପରିଶ୍ରମ କରିବାକୁ ପଡ଼ିଥିଲା । ଦିନେ ଦିନେ କୋଡିଏ କିମ୍ବା ପଚିଶ ମାଇଲ ବାଟ ଚାଲିବାକୁ ପଡ଼େ । ଖାଇବାର କିଛି ଠିକ୍ ନ ଥାଏ । ଅନେକ ଦିନରୁ ସେ ଅତି ସାମାନ୍ୟ ଆହାରରେ ଦିନ କଟାଉଅଛନ୍ତି । ରକ୍ତ ମାଂସର ଶରୀର କେତେ ସହ୍ୟ କରିବ ? ଶେଷରେ ସେ ପୀଡିତ ହୋଇ ପଡ଼ିଲେ । ଏହି ସମୟରେ ତାହାଙ୍କର ଅବସ୍ଥା ଏପରି ହୋଇପଡିଲା ଯେ, ଆଉ ବଞ୍ଚିବାର ଆଶା ନ ଥିଲା । ବୈଦ୍ୟ ଆସି କହିଲେ, ଆଉ ଆଶା ନାହିଁ । କାଠ, ବାଉଁଶ ସବୁ ଠିକ୍ ହେଲା । ସମସ୍ତ ଆଶ୍ରମବାସୀ କାହିଁକି, ସମସ୍ତ ଭାରତବାସୀ ଏହା ଦେଖି ଅଧୀର ଓ ବ୍ୟାକୁଳ ହୋଇ ପଡ଼ିଲେ । ସେ ଯେଉଁ କାର୍ଯ୍ୟ ନେଇ ଜଗତକୁ ଆସିଛନ୍ତି, ତାହା ଶେଷ ହୋଇ ନାହିଁ । ଈଶ୍ୱରଙ୍କର ଇଚ୍ଛା ପୂର୍ଣ୍ଣ ହୋଇ ନାହିଁ । ସୁତରାଂ ସେ ଛାଡ଼ିବେ କିପରି ? ଈଶ୍ୱରଙ୍କ ଅପାର କରୁଣାବଳରୁ ରୋଗର ତେଜ କ୍ରମେ ହ୍ରାସ ଲଭିଲା । ସେ ଧୀରେ ଧୀରେ ରୋଗମୁକ୍ତ ହେଲେ । ପୀଡ଼ା ଏପରି ଏପରି ସାଂଘାତିକ ହୋଇଥିଲା ଯେ, ସେ ସେଥିରୁ ମୁକ୍ତି ଲଭି ନ ଥିଲେ ଯେ, ପୁନର୍ଜନ୍ମ ଲାଭ କରି-ଥିଲେ କହିଲେ ଚଳେ ।

ଇତି ମଧ୍ୟରେ ଇଉରୋପରେ ମହାସମର ଶେଷ ହେଲା । ଇଂରେଜ-ମାନେ ଯୁଦ୍ଧରେ ଜୟୀ ହେଲେ । ଭାରତବାସିମାନେ ଧନ ପ୍ରାଣ ଦେଇ ଯେ

ସାହାଯ୍ୟ କରିଥିଲେ, ତାହାର ବଦଳରେ ସେମାନେ ଆଶା କରିଥିଲେ ଯେ, ଦେଶର ଶାସନ ମତ ପରିବର୍ତ୍ତିତ ହେବ । ସେମାନଙ୍କର ଦୁଃଖ କଷ୍ଟ ଏଡ଼ିକି ସେଠିବ । ସରକାର କିଛି ଶାସନ ସଂସ୍କାର କଲେ ସତ୍ୟ, କିନ୍ତୁ ତହିଁରେ ଭାରତର ଲୋକେ ସନ୍ତୁଷ୍ଟ ହେଲେ ନାହିଁ । ଏହି ଯେ ଶାସନ ସଂସ୍କାର ହେଲା, ତଦ୍ଦ୍ୱାରା ଦେଶରେ ଦଳ ସୃଷ୍ଟି ହେଲା । ଅଧିକାଂଶ ଲୋକ ଏହି ଶାସନ ସଂସ୍କାର ନୀତିକୁ ଗ୍ରହଣ କରିବାକୁ ଅନିଚ୍ଛୁକ ହେଲେ । ଅନେକେ ମଧ୍ୟ ଯାହା ମିଳିଲା, ତହିଁରେ କିଛି ଦିନପାଇଁ ସନ୍ତୁଷ୍ଟ ରହି ଅଟକୁ କାମ କରିଯିବା ଆଶାରେ ବଡ଼ ବ୍ୟଗ୍ର ହୋଇ ଉଠିଲେ । ଏହିପରି ଦେଶରେ ମତଭେଦ ଜାତ ହେଲା । ଏହିଠାରୁ ଚରମପନ୍ଥୀ ଓ ନରମପନ୍ଥୀ ଦଳ ଦୁଇଟି ପ୍ରକାଶ୍ୟରେ ଦାଣ୍ଡକୁ ବାହାରି ପଡ଼ିଲେ । ନରମପନ୍ଥିମାନେ କଂଗ୍ରେସକୁ ଛାଡ଼ି ସେମାନଙ୍କର ଗୋଟିଏ ନିଜର ସଭା ଆରମ୍ଭ କଲେ ।

ଦେଶର ନେତାମାନେ ଏହିପରି ଭିନ୍ନ ଭିନ୍ନ ମତାବଲମ୍ବୀ ହୋଇଥିବା ସମୟରେ ଭାରତ ସରକାର ଗୋଟିଏ ନୂଆ ଆଇନ ଜାରି କରିବାକୁ ଚାହୁଁଥିଲେ । ସେହି ଆଇନଟି ରାଉଲଟ୍ ଆଇନ ନାମରେ ପରିଚିତ । ସରକାର ଏହି ଆଇନଟିକୁ ଯାହିଁକି ଜାରି କରିବାକୁ ବସିଲେ, ସେ କଥା ବୁଝାଇବାକୁ ଗଲେ ଗୋଟାଏ ବଡ଼ ଗ୍ରନ୍ଥ ହୋଇ ପଡ଼ିବ । ତେବେ ସଂକ୍ଷେପ କଥାରେ କହିବାକୁ ଗଲେ ଏହା କହିବାକୁ ହେବ ଯେ, ଏହା ଆମ ଦେଶର ଲୋକମାନଙ୍କ ଗଳାକୁ ଗୋଟାଏ ବଜ୍ରଫାଶ । ଆମ ଗଳାରେ କାହିଁକି ଗୋଟାଏ ଫାଶ ପକାଉଥିଲେ, ତାହା ପାଠକମାନେ ଟିକିଏ ଭାବିଲେ ବୁଝି ପାରିବେ । ଏହି ଗଳାଫାଶ ଆଇନକୁ ଦେଶରେ କୌଣସି ଲୋକ ସମର୍ଥନ କଲେ ନାହିଁ । ସମସ୍ତେ ଏହାର ତୀବ୍ର ପ୍ରତିବାଦ କଲେ । ଦେଶର ଚାରିଆଡ଼େ ସଭା ହୋଇ ଏହାର ପ୍ରତିବାଦ ହେଲା । କିନ୍ତୁ ସରକାର ସେ ସବୁ କିଛି ନ ଶୁଣି ତାଙ୍କ କାମ କରିନେବାକୁ ବସିଲେ । ଲୋକେ ବଡ଼ ପ୍ରମାଦ ଗଣିଲେ । ଧନ ଜନ ଦେଇ ଭାରତବର୍ଷର ଲୋକମାନେ ସରକାରକୁ ଯୁଦ୍ଧରେ କେତେ ସାହାଯ୍ୟ କରି ନ

ଥିଲେ ? ସେତେବେଳେ ମଧ୍ୟ ସରକାରୀ କର୍ମଚାରୀମାନେ କାଁହିଁକି ସଅଁଳ କରି କେତେ କଥା କହି ନ ଥିଲେ ? କିଏ ଜାଣିଥିଲା ଯେ, ସେମାନେ ଶେଷରେ ଏପରି ବ୍ୟବହାର କରିବେ ? ଭାରତବାସୀମାନଙ୍କ କଥା ନ ଶୁଣି ଯାହା ଇଚ୍ଛା ତାହା ସେମାନେ କରିବେ ? ଏହା ଦଗା ଦେବା ନୁହେଁ ତ ଆଉ କଣ ?

ଏହି ସମୟରେ ମହାତ୍ମା ଗାନ୍ଧୀ କର୍ମକ୍ଷେତ୍ରକୁ ପୁନର୍ବାର ବାହାରି ଆସିଲେ । କିନ୍ତୁ ସେତେବେଳକୁ ତାଙ୍କର ପଦେ କଥା କହିବାର ଶକ୍ତି ନାହିଁ । ରୋଗଶଯ୍ୟା ସମ୍ପୂର୍ଣ୍ଣରୂପେ ଛାଡ଼ି ନାହାନ୍ତି ତାହା ହେଲେ କଣ ହେବ, ସେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ଦେଶର ବିପଦ ଦେଖି ତାଙ୍କର ମନ ପ୍ରାଣ କାନ୍ଦି ଉଠିଲା । ସେ ବଡ଼ଲାଟ ସାହେବଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଲେ । ତହିଁରେ ରାଉଲାଟ ଆଇନଟିକୁ ପାଶ ନ କରାଇବା ପାଇଁ ବହୁ ସାନୁନୟ ନିବେଦନ କରିଥିଲେ । ସେହି ପତ୍ରରେ ମଧ୍ୟ ଉଲ୍ଲେଖ କରିଥିଲେ ଯେ ସରକାର ଯେବେ ଏହିପରି ସମସ୍ତ ଭାରତବର୍ଷର ଲୋକମତକୁ ଅବଜ୍ଞା କରି ଏହି ଆଇନ ପାଶ କରନ୍ତି, ତେବେ ତାହାର ଫଳାଫଳପାଇଁ ସେ ଦାୟୀ ହେବେ । ଭାରତର ଲୋକେ ଏହି ଅପମାନକୁ ନୀରବରେ କଦାପି ସହ୍ୟ କରି ପାରିବେ ନାହିଁ । ଏହାର ପ୍ରତିକାରପାଇଁ ମୁଁ ଦୁଇଟି ଉପାୟ ଦେଖି ପାରୁ-ଅଛି । ଗୋଟିଏ ହେଉଛି—ତୁମ୍ଭମାନଙ୍କୁ ମାରିପିଟି ଭାରତରୁ ତଡ଼ି ଦେବା, କିନ୍ତୁ ଏହା କରିବାକୁ ଭାରତର ଶକ୍ତି କିମ୍ବା ଶିକ୍ଷା ନାହିଁ । ମୁଁ ମଧ୍ୟ ଏହି ମାରଧର ରୀତିକୁ ପସନ୍ଦ କରେ ନାହିଁ । ମୋ ପାଖରେ ଅନ୍ୟ ଉପାୟଟି ଅଛି ତାହା ଏହି—ମୁଁ ଦେଶରେ ପ୍ରଚାର କରି ବୁଲିବି ଯେ, ଏହି ସରକାରକୁ ଆଉ ଏଣିକି କେହି ଡର ନାହିଁ । ସେ ଯେଉଁ ସବୁ ନିୟମ ବାନ୍ଧିଛନ୍ତି, ତାହା ଲଂଘନ କର । କିନ୍ତୁ କାହାରିକୁ କୌଣସି ପ୍ରକାର ଆଘାତ କର ନାହିଁ । ଏହି ନିୟମଲଂଘନ ଦୋଷପାଇଁ ସରକାର ଯେଉଁ ଦଣ୍ଡ ଦେବେ, ତାହା

ଶରୀରରେ ସତ୍ୟ କର । ଦେଖାଯାଉ ସରକାର କେତେ ଦିନ କପଟରେ ଏ ଦେଶକୁ ଶାସନ କରିବେ ।

ମହାତ୍ମା ଗାନ୍ଧୀଙ୍କର ଏହି ପତ୍ର ପାଇ ବଡ଼ଲାଟ ସାହେବ ଟିକିଏ ଅସ୍ଥିର ହୋଇଥିଲେ । ସେ ତାଙ୍କୁ ଦିଲ୍ଲୀକୁ ଡକାଇ ପଠାଇଲେ । ମନେ କରିଥିଲେ ଯେ ଗାନ୍ଧୀଙ୍କୁ କୌଣସି ପ୍ରକାରେ ଭୁଲାଇ ଦେବେ, କିନ୍ତୁ ତାଙ୍କୁ ଭୁଲାଇବା ସହଜ ନୁହେଁ । ବଡ଼ଲାଟ ସାହେବଙ୍କ ଡ଼ାକରେ ମହାତ୍ମା ଗାନ୍ଧୀ ଦିଲ୍ଲୀକୁ ଗଲେ । ବଡ଼ଲାଟଙ୍କୁ ଯାହା କହିବାର ତାହା କହି ଲେଉଟି ଆସିଲେ । ମହାତ୍ମା ଗାନ୍ଧୀ ଯାହା କହି ଆସିଲେ, ତହିଁରେ ମଧ୍ୟ ବଡ଼ଲାଟ ସାହେବଙ୍କର ଆଖି ଫିଟିଲା ନାହିଁ । ସବୁ ଶେଷରେ କୌଣସି ପ୍ରକାରେ ଆଇନଟିକୁ ପାଶ କରାଇ ନେବାକୁ ବସିଲେ ।

ଏଣେ ମହାତ୍ମା ଗାନ୍ଧୀ ସତ୍ୟାଗ୍ରହ ବ୍ରତର ଗୋଟିଏ ଘୋଷଣାପତ୍ର ଦେଶରେ ପ୍ରଚାର କରି ଦେଇ ଲୋକମାନଙ୍କୁ ସେଥି ଗ୍ରହଣ କରିବାକୁ ଆହ୍ୱାନ କଲେ । ଭାରତବର୍ଷର ଭିନ୍ନ ଭିନ୍ନ ପ୍ରଦେଶରେ ବୁଲି ଲୋକମାନଙ୍କୁ ଏହି ବ୍ରତ ଗ୍ରହଣ କରିବାକୁ ଉତ୍ସାହିତ କରାଇଲେ । ତାହାଙ୍କର ଆହ୍ୱାନରେ ସହସ୍ର ସହସ୍ର ଲୋକ ଉକ୍ତ ବ୍ରତ ଗ୍ରହଣ କଲେ । ଦେଶର ଅନେକ ପ୍ରଧାନ ପ୍ରଧାନ ଲୋକ ମଧ୍ୟ ଏହି ବ୍ରତ ଗ୍ରହଣ କରି ଜେଲ ଯିବାପାଇଁ ପ୍ରସ୍ତୁତ ହେଲେ । ବ୍ୟାପାର ଏତେ ଦୂର ଗୁରୁତର ହୋଇ ଚାଲିଲା, ତଥାପି ସରକାରଙ୍କର ଦୃଷ୍ଟି ଫେରିଲା ନାହିଁ । ଯେଉଁ ଦିନ ଏହି ଆଇନଟି ପାଶ୍ ହୋଇଗଲା, ଠିକ ତାହାର ସାତଦିନ ପରେ ଅର୍ଥାତ୍ ୧୯୧୯ ମସିହା ଏପ୍ରିଲ ମାସର ୬ ତାରିଖ ଦିନକୁ ମହାତ୍ମା ଗାନ୍ଧୀ ସତ୍ୟାଗ୍ରହ ଦିବସ ବୋଲି ପ୍ରଚାର କଲେ । ଭାରତ-ବର୍ଷର ଚାରିଆଡ଼େ ଏହି ସତ୍ୟାଗ୍ରହ ଦିବସକୁ ଲୋକେ ଅତି ଆନନ୍ଦରେ ପାଳନ କଲେ । ସମଗ୍ର ଦେଶମୟ ହରତାଳ ହେଲା ଲୋକେ ସେ ଦିନ ସମସ୍ତ ପ୍ରକାର କର୍ମ ବନ୍ଦ କରି ମହାତ୍ମା ଗାନ୍ଧୀଙ୍କରେ ଆନ୍ଦୋଳନରେ ନିଜ ନିଜ

ସୁବିଧା ସ୍ଥାନମାନଙ୍କରେ ପୂଜା ଅର୍ଚ୍ଚନା ଇତ୍ୟାଦି କାର୍ଯ୍ୟରେ ରତ ରହିଲେ ସେଦିନ ପ୍ରାତଃକାଳରୁ ଘନ ସାର ହଜାର ହଜାର ଲୋକ ଏକତ୍ରରେ ଶୋଭାଯାତ୍ରା କରି ମହାତ୍ମା ଗାନ୍ଧୀଙ୍କର ସତ୍ୟାଗ୍ରହ ବ୍ରତ ପାଳନ କରିଥିଲେ । ହିନ୍ଦୁମାନେ ଦେବମନ୍ଦିରମାନଙ୍କରେ ହୋମ, ପୂଜା, ପାଠ, ଇତ୍ୟାଦି କର୍ମମାନ ସମ୍ପନ୍ନ କରିଥିଲେ । ମୁସଲମାନ ଭାଇମାନେ ସେମାନଙ୍କର ମସଜିଦରେ ସେମାନଙ୍କ ବିଧି ଅନୁସାରେ ପୂଜା ପାଠ କରିଥିଲେ । ମହାତ୍ମା ଗାନ୍ଧୀଙ୍କ କଥାରେ ଏପରି ସମସ୍ତ ଦେଶରେ ଗୋଟିଏ ନୂତନ ଜୀବନର ସ୍ରୋତ ଖେଳିଗଲା । ମୃତ୍ୟୁସଞ୍ଜୀବନ ମନ୍ତ୍ର ପରି ତାହାଙ୍କର ସତ୍ୟାଗ୍ରହ ବାଣୀ ଅନ୍ୟାୟ ଅତ୍ୟାଚାରରେ ପ୍ରପୀଡ଼ିତ ଓ ଦୁଃଖ କଷ୍ଟରେ ଜର୍ଜରିତ ଭାରତବାସୀର ପ୍ରାଣରେ ଗୋଟିଏ ନୂତନ ଆଶାର ତରଙ୍ଗ ଖେଳାଇ ଦେଲା । ସେ ସମୟରେ ଭାରତବର୍ଷରେ ଯେଉଁ ସବୁ ବ୍ୟାପାର ଘଟିଥିଲା, ଲୋକମାନଙ୍କ ମଧ୍ୟରେ ଦେଶ ଭାବ ଯେପରି ଜାଗି ଉଠିଥିଲା, ତାହା ଯେ ନିଜ ଆଖିରେ ନ ଦେଖିଛି ବା ହୃଦୟରେ ଅନୁଭବ ନ କରିଛି, ତାକୁ ବୁଝାଇ କହିବା ଅସମ୍ଭବ ।

ଏହି ବ୍ୟାପାର ଦେଖି ସରକାରଙ୍କର ମହାଆତଙ୍କ ଉପସ୍ଥିତ ହେଲା । ସେ ମନେ କରିଥିଲେ, ଭାରତବାସୀ କୌଣସି ଆନ୍ଦୋଳନ କରି ପାରିବେ ନାହିଁ ସେମାନଙ୍କ ସଭା ସମିତିରେ ଯେ ସବୁ କାର୍ଯ୍ୟ, ତହିଁରେ କିଛି ମୂଲ୍ୟ ନାହିଁ କୁକୁର ଭୁକିଲା ପରି କେବଳ କେତେଗୁଡ଼ାଏ ମିଛରେ ଭୁକୁଛନ୍ତି । କିଏ କଣ କରିବେ ! ଯେଉଁ ସିଭିଲ ସର୍ଭିସ ଅଇନକୁ ପାଶ କରାଇ ନେଇଛନ୍ତି, ତାକୁ ଉଠାଇ ନେବାକୁ ମନ ବଳୁ ନାହିଁ । ସୁତରାଂ କୌଣସି ପ୍ରକାରେ ଭାରତବର୍ଷରେ ଯେଉଁ ନୂତନ ଜୀବନ ଜାଗ୍ରତ ହୋଇଅଛି, ତାକୁ ଦମନ କରିବାକୁ ଉଦ୍ୟମ କଲେ । ଏହାକୁ ଦମନ କରିବାକୁ ହେଲେ ଗାନ୍ଧୀଙ୍କୁ ଧରି ନେଲେ କାର୍ଯ୍ୟ ଶେଷ । ଗାନ୍ଧୀ ଯୋଗୁଁ ସିନା ଏତେ କାଣ୍ଡ, ତାକୁ ଧରିନେଲେ ତ ସମସ୍ତେ ନୀରବ । ଏହାପରି ଭାବି ଗାନ୍ଧୀଙ୍କୁ ଧରିବାକୁ ଚେଷ୍ଟା କଲେ ।

ଏଣେ ମହାତ୍ମାଜୀ ବମ୍ବେଇ ସହରରେ ସତ୍ୟାଗ୍ରହ ଲଢ଼ାଇ, ଆରମ୍ଭ କରିଦେଇ ପଞ୍ଜାବ ଯିବାପାଇଁ ପ୍ରସ୍ତୁତ । ସତ୍ୟାଗ୍ରହ ଲଢ଼ାଇରେ ସରକାରଙ୍କର ନିୟମକୁ ଲଙ୍ଘନ କରିବାକୁ ହୁଏ । ମହାତ୍ମାଜୀ ପ୍ରଥମେ ସରକାରଙ୍କର ନିୟମକୁ ଲଙ୍ଘନ କରି କେତେକ ବହି ବିକ୍ରି କଲେ, ସରକାରଙ୍କର ବିନା ଅନୁମତିରେ ଗୋଟିଏ ସମ୍ବାଦପତ୍ର ବାହାର କଲେ । ଏପରି କରିବା ସରକାରଙ୍କ ଦୃଷ୍ଟିରେ ନିୟମବିରୁଦ୍ଧ କାର୍ଯ୍ୟ । ସେ ଏହି କାର୍ଯ୍ୟ କରି ଦେଶବାସୀମାନଙ୍କୁ ଶୁଣାଇ ଦେଲେ ଯେ, ପ୍ରଥମେ ସମସ୍ତେ ଏହି ନିୟମ ଲଙ୍ଘନ କରି ସତ୍ୟାଗ୍ରହ ଆରମ୍ଭ କରନ୍ତୁ । ଏହା ପରେ ଗୋଟିଏ କମିଟି ବସିବ, ଯେପରି ଯେଉଁ ନିୟମକୁ ଲଙ୍ଘନ କରିବାକୁ କହିବେ, ସେହିପରି କରିବାକୁ ହେବ । ଅପ୍ରେଲ ୭ତାରିଖ ଦିନ ଏହି ଘଟନା ଘଟିଥିଲା ।

ମହାତ୍ମା ଗାନ୍ଧୀ ୯ ତାରିଖ ଦିନ ପଞ୍ଜାବ ଯାତ୍ରା କଲେ । ସେ ଯେଉଁ ରେଲଗାଡ଼ିରେ ଯାଉଥିଲେ, ସେହି ଗାଡ଼ି ଯେଉଁ ଷ୍ଟେସନରେ ରହୁଥାଏ, ସେଠାରେ ହଜାର ହଜାର ଲୋକ ମହାତ୍ମାଙ୍କର ଦର୍ଶନ ଲାଗି ରୁଣ୍ଡ ହେଉଥାନ୍ତି । ଏହି ଅବସରରେ ଭାରତସରକାର ତାଙ୍କ ଉପରେ ଗୋଟିଏ ନୋଟିସ ଜାରି କରି ତାଙ୍କୁ ହୁକୁମ କଲେ ଯେ, ବମ୍ବେଇ ଛଡ଼ି ଅନ୍ୟତ୍ର ଯାଇ ପାରିବେ ନାହିଁ । ପଞ୍ଜାବର ଛୋଟ ଲାଟ ସାହେବ ମଧ୍ୟ ତାଙ୍କୁ ପଞ୍ଜାବକୁ ଯିବାକୁ ନିଷେଧ କରି ଦେଲେ । ଦିଲ୍ଲୀ ସହରର ସରକାର କର୍ମଚାରୀମାନେ ମଧ୍ୟ ଦିଲ୍ଲୀକୁ ଯିବାକୁ ନିଷେଧ କରିଦେଲେ । ଏହି ସବୁ ହୁକୁମରେ ଏହା ମଧ୍ୟ ଉଲ୍ଲେଖ ହୋଇଥାଏ ଯେ, ସେ ଯଦି ଏହି ହୁକୁମ ନ ମାନି ତାଙ୍କ ଇଚ୍ଛାନୁସାରେ କାର୍ଯ୍ୟ କରନ୍ତି, ତାହାହେଲେ ସେ ଶୀଘ୍ର ବନ୍ଦୀ ହେବେ । ଏହି ସବୁ ହୁକୁମ ପାଇଁ ମହାତ୍ମା ଗାନ୍ଧୀ କହିଥିଲେ ଯେ, ସେ ସରକାରଙ୍କର ଏହି ହୁକୁମ ସବୁ ମାନି ପାରିବେ ନାହିଁ । ଏଥିପାଇଁ ସେ ବଡ ଦୁଃଖିତ । ଏହା କହି ସେ ପଞ୍ଜାବ ଅଭିମୁଖରେ ଯାତ୍ରା କଲେ । ଗାଡ଼ି ପଞ୍ଜାବର ସୀମାନ୍ତପ୍ରଦେଶରେ ଲାଗିଲାକ୍ଷଣି ସେହି ସ୍ଥାନର ପୋଲିସକର୍ମଚାରୀ ମହାତ୍ମାଜୀଙ୍କୁ ଧରି ନେଲେ । ନୀରବରେ ନିଜକୁ ପୋଲିସ

ହସ୍ତରେ ସମର୍ପଣ କଲେ । ପରେ ବ୍ୟାପାର କଣ ହେଲା, ପାଠକମାନେ ଶୁଣନ୍ତୁ ।

ମହାତ୍ମା ଗାନ୍ଧୀ ବର୍ତ୍ତମାନ ଧୃତ । ସରକାର ତାଙ୍କୁ କଣ କରିବେ, ତାହା ସେ ଜାଣନ୍ତି । କିନ୍ତୁ ଏହି ସମ୍ବାଦ ବିଜୁଳି ପରି ଅଳ୍ପକ୍ଷଣ ମଧ୍ୟରେ ଦେଶର ଚାରିଆଡ଼େ ବ୍ୟାପିଗଲା । ଲୋକେ ହାହାକାର କରିବାକୁ ଲାଗିଲେ । ଗ୍ରାମ, ବଜାର, ହାଟ ସବୁ ବନ୍ଦ ହୋଇଗଲା । ବଡ ବଡ ସହରମାନଙ୍କରେ ଗାଡି ଘୋଡା ପର୍ଯ୍ୟନ୍ତ ବନ୍ଦ ହୋଇଗଲା । ଆଉ ଚଳିଲା ନାହିଁ । ଅନେକ ସ୍ଥଳରେ ଲୋକେ ବିଶେଷ ଉତ୍ତେଜିତ ହୋଇ ଉଠିଲେ । କେହି କହିଲା, ଇଂରେଜମାନଙ୍କୁ "ମାର", କେହି କହିଲା "ଧର", ଗୋଟିଏ ତୁମୁଳ କାଣ୍ଡ ଦେଶରେ ସଙ୍ଘଟ ହୋଇ ଉଠିଲା । ବାଳ, ବୃଦ୍ଧ, ବନିତା ସମସ୍ତେ କହିବାକୁ ଲାଗିଲେ, "ମହାତ୍ମାଜୀଙ୍କୁ ସରକାର ଏଥର ଛାଡି ନ ଦେଲେ ଏ ଦେଶରେ ଆଉ ଶାନ୍ତି ରହିବ ନାହିଁ ।" ଅନେକ ସ୍ଥଳରେ ମଧ୍ୟ ଲୋକେ କେତେକ ଇଂରେଜ ପୁରୁଷଙ୍କୁ ହତ୍ୟା କରି ପକାଇଲେ, ରେଲପଥ ଭାଙ୍ଗି ଦେଲେ, ତାର ଘର ଜଳାଇ ଦେଲେ । ସରକାରଙ୍କର କଚେରୀ ସବୁ ପୋଡ଼ି ପକାଇଲେ । ଏହିପରି ଦେଶରେ ଏକ ବିଷମ ବ୍ୟାପାର ଘୋଟିଗଲା । ସରକାର କଣ ଭାବିଲେ କେଜାଣି, ମହାତ୍ମାଜୀଙ୍କୁ ଶୀଘ୍ର ବମ୍ବେଇ ସହରରେ ତୁନି କରି ଛାଡ଼ି ଦେଇ-ଗଲେ ।

ମହାତ୍ମାଜୀ ବମ୍ବେଇ ସହରରେ ଉପସ୍ଥିତ ହୋଇ ଦେଖିଲେ ଯେ, ଚାରି ଆଡେ ଅଶାନ୍ତି ବ୍ୟାପି ଯାଇଅଛି । ତାଙ୍କ କଥାକୁ ଲୋକେ ବୁଝି ନ ପାରି ନାନା ପ୍ରକାର ଉପଦ୍ରବ ଘଟାଇଅଛନ୍ତି । ଅନ୍ୟର ଧନ, ପ୍ରାଣ କ୍ଷୟ କରି ନିଜର ଉଦ୍ଦେଶ୍ୟ ସିଦ୍ଧ କରିବା ମହାତ୍ମାଜୀଙ୍କର ଆଦୌ ଇଚ୍ଛା ନୁହେ । ସେ ଏହାକୁ ପଶୁବଳ ବୋଲି ବିଶେଷ ନିନ୍ଦା କରନ୍ତି । ଯେଉଁମାନେ ଏହି ପଶୁବଳ ପ୍ରୟୋଗ କରନ୍ତି, ତାହାଙ୍କ ଦୃଷ୍ଟିରେ ସେମାନେ ପ୍ରଶଂସାର ଯୋଗ୍ୟ ନୁହନ୍ତି । ସେ କହନ୍ତି,

ଯେ, ଏହି ପଶୁବଳ ପ୍ରୟୋଗ କରି ଯେଉଁମାନେ ଜଗତରେ ଜୟୀ ହୁଅନ୍ତି, ସେମାନଙ୍କର ଜୟ ସ୍ଥାୟୀ ନୁହେଁ । ଏହାଦ୍ୱାରା ଜଗତର ଅନେକ ହାନି ହୁଏ । ମନୁଷ୍ୟସମାଜରେ ହିଂସା ଦ୍ୱେଷ ବଢ଼ିଯାଏ । ମନୁଷ୍ୟ ଯଦି ଅନ୍ୟାୟ କରେ, ତାହାର ଶରୀର ଉପରେ ଆଘାତ କରି କଦାପି ତାହାକୁ ନ୍ୟାୟପଥକୁ ଅଣାଯାଇ ପାରେ ନାହିଁ । ଅନ୍ୟାୟୀ ଓ ପାପୀକୁ ସତ୍ପଥକୁ ଆଣିବାକୁ ହେଲେ ତାହାର ମନ ପରିବର୍ତ୍ତନ କରିବା ଦରକାର । ନିଜେ ମଧ ସତ୍ମାର୍ଗରେ ଚଳିବା ଆବଶ୍ୟକ । ନିଜର ବିବେକ ଯାହା କହେ, ନିଜର ଧର୍ମବୁଦ୍ଧି ଯେଉଁ ଇଙ୍ଗିତ କରେ, ତଦନୁସାରେ ମନୁଷ୍ୟ ଚଳିଲେ, ଅନ୍ୟାୟୀ ଓ ପାପିମାନେ ଆପେ ଆପେ ଦୂର ହୋଇ ଯିବେ । ଭାରତସରକାର ଆଜି ଯେଉଁ ଅନ୍ୟାୟ କରିଅଛନ୍ତି, ସେଥିପାଇଁ ତାଙ୍କ ସହ କଳି ଲଗାଇବାର ଆବଶ୍ୟକ ନାହିଁ । ସେ ଯେଉଁ ଅନ୍ୟାୟ ନିୟମ ସବୁ ବାନ୍ଧିଛନ୍ତି, ତାହା ପାଳନ କରିବା ଓ ନ କରିବା ଆମ୍ଭ ଉପରେ ନିର୍ଭର କରେ । ଆମ୍ଭର ବିବେକ ଯଦି କହେ, ତାହା ପାଳନ କରିବା ଅନୁଚିତ, ତେବେ ଆମ୍ଭେ ନିଶ୍ଚୟ ସେ ସବୁ ନିୟମ ଲଙ୍ଘନ କରି ପାରୁଁ । ସରକାର ଆମ୍ଭମାନଙ୍କୁ ଧରି ଦଣ୍ଡ ଦେବେ । କିନ୍ତୁ ଆମ୍ଭେ ତାଙ୍କ କଥାକୁ ନ ମାନିଲେ ଆମ୍ଭଙ୍କୁ ମନାଇବେ ବା କିପରି ?

ଏଥିପାଇଁ ପଶୁବଳ ପ୍ରୟୋଗ କରି ସେମାନଙ୍କ ଶରୀରକୁ ନଷ୍ଟ କରିଦେବା ଆମ୍ଭର କର୍ତ୍ତବ୍ୟ ନୁହେଁ । ମୁଁ ଏହା କରିବାକୁ ସତ୍ୟାଗ୍ରହ ଚଳାଇ ନାହିଁ । ମୋର ବିଶ୍ୱାସ ଥିଲା, ଲୋକେ ସତ୍ୟାଗ୍ରହର ମର୍ମ ବୁଝି ପାରିଛନ୍ତି । ଦେଶରେ ଆଜି ଯେଉଁ ବିପ୍ଳବ ଘଟିଗଲା, ତାହା ହୋଇ ନ ଥିଲେ ମୁଁ ପୁଣି ସେପରି ଗାଡ଼ିରେ ପଞ୍ଜାବ ଯାତ୍ରା କରିଥାନ୍ତି । ସରକାର କେତେଥର ମତେ ଧରି ଫେରାଇ ଆଣନ୍ତେ, ମୁଁ ଦେଖିଥାନ୍ତି । ମୁଁ ଯାହା ଚାହେଁ, ଯେପରି ଭାବରେ ଏହି ଲଢ଼ାଇ ଚଳାଇବାକୁ ମୋର ଇଚ୍ଛା, ଲୋକେ ତାହା ବୁଝି ପାରି ନ ଥିବାରୁ ମୁଁ ବାଧ୍ୟ ହୋଇ ସତ୍ୟାଗ୍ରହ କିଛିକାଳ ପାଇଁ ବନ୍ଦ କଲି । ଦେଶରେ ଯେଉଁ ହତ୍ୟାକାଣ୍ଡ ସବୁ ଘଟିଅଛି, ସେଥିପାଇଁ ମୁଁ ନିଶ୍ଚୟ ଈଶ୍ୱରଙ୍କ ନିକଟରେ ଦାୟୀ । ଯେଉଁ ଯେଉଁ ସ୍ଥାନରେ ଏହି

ହତ୍ୟାକାଣ୍ଡ ଘଟିଅଛି, ସେ ସ୍ଥାନର ଲୋକେ ମଧ୍ୟ ସେଥିପାଇଁ ଦାୟୀ । ଏହି ପାପପାଇଁ ସମସ୍ତଙ୍କୁ ପ୍ରାୟଶ୍ଚିତ୍ତ କରିବାକୁ ହେବ । ସମସ୍ତଙ୍କୁ ଗୋଟିଏ ଦିନ ଉପବାସ କରିବାକୁ ହେବ । ପ୍ରାୟଶ୍ଚିତ୍ତର ଦକ୍ଷିଣାସ୍ୱରୂପ ସମସ୍ତଙ୍କୁ କିଛି କିଛି ଅର୍ଥ ଦେବାକୁ ପଡ଼ିବ । ଏହି ଅର୍ଥରେ ଯେଉଁ ସବୁ ଇଂରେଜ ହତ ହୋଇଅଛନ୍ତି, ସେମାନଙ୍କର ପରିବାରବର୍ଗଙ୍କୁ ସାହାଯ୍ୟ ଦିଆଯିବ । ସେଥିରୁ ବଳିଲେ ଭାରତବାସୀ ପାଇ ପାରିବେ ।

ମହାତ୍ମା ଗାନ୍ଧୀ ଏହିପରି ଏକ ଘୋଷଣା ଜାରି କରି ନିଜେ ମଧ୍ୟ ତିନିଦିନ ଉପବାସ କରିଥିଲେ ।

ଏହା ପରେ ସେ ବମ୍ବେଇ ସହରରେ କିଛିଦିନ ରହିଥିଲେ । ସତ୍ୟାଗ୍ରହିମାନଙ୍କୁ ଉପଦେଶ ଦେଇ ଅନେକ ପତ୍ର ପ୍ରକାଶ କରିଥିଲେ । ଏହି ସମୟରୁ ତାହାଙ୍କର ଇୟଙ୍ଗ୍ ଇଣ୍ଡିଆ ନାମରେ ଖଣ୍ଡିଏ ଇଂରେଜୀ ସାପ୍ତାହିକ ପତ୍ର ଓ ନବଜୀବନ ନାମରେ ଖଣ୍ଡିଏ ଗୁଜରାଟି ସମ୍ବାଦ ପତ୍ର ପ୍ରକାଶିତ ହେଉଅଛି । ଯେଉଁ ଚର୍ଖା ବା ଅରଟର କଥା ଆଜି ମହାତ୍ମାଜୀ କହୁଛନ୍ତି, ତାହାର ପ୍ରଚାର ଏହି ସମୟରୁ ଆରମ୍ଭ ହୋଇଅଛି । କିନ୍ତୁ ଇତିମଧ୍ୟରେ ଦେଶର ଲୋକେ ପୁଣି ସତ୍ୟାଗ୍ରହ କେବେ ଆରମ୍ଭ ହେବ, ତାହା ଜାଣିବା ପାଇଁ ବଡ଼ ଉଦ୍‌ବିଗ୍ନ ହୋଇ ଉଠିଲେ । ମହାତ୍ମା ଗାନ୍ଧୀ ଘୋଷଣାପତ୍ରଦ୍ୱାରା ପ୍ରଚାର କରି ଦେଲେ ଯେ, ୩ ମାସ ପରେ ପୁଣି ସତ୍ୟାଗ୍ରହ ଆରମ୍ଭ ହେବ । କିନ୍ତୁ ପଞ୍ଜାବରେ କଣ ହେଉଛି, ତାହା ଏ ପର୍ଯ୍ୟନ୍ତ କାହାରିକୁ ଜଣା ନାହିଁ, କି ଜାଣିବାର ମଧ୍ୟ କିଛି ଉପାୟ ନାହିଁ । ସରକାର ସୈନିକ ଆଇନ୍ ପଞ୍ଜାବ ପ୍ରଦେଶରେ ସ୍ଥାନେ ସ୍ଥାନେ ଜାରି କରି ନୃଶଂସ ଅତ୍ୟାଚାର ଆରମ୍ଭ କରିଦେଲେ, ଜାଲିଆନୱାଲାବାଗର ହତ୍ୟାକାଣ୍ଡଠାରୁ ଆରମ୍ଭ କରି ପଞ୍ଜାବରେ ଯେ ନୃଶଂସ ଓ ଅମାନୁଷିକ ଅତ୍ୟାଚାରମାନ ହୋଇଗଲା, ତାହା ମନୁଷ୍ୟ କଳ୍ପନା କରିପାରେ ନା । ସରକାର ପଞ୍ଜାବ ଭିତରକୁ କାହାରିକୁ ଛାଡ଼ିଦେଲେ ନାହିଁ । ପଞ୍ଜାବରୁ ମଧ୍ୟ କେହି ବାହାରକୁ ଆସି ପାରିଲେ ନାହିଁ । ସୁତରାଂ ପଞ୍ଜାବରେ କଣ ଘଟୁଛି, ତାହା

ଜାଣିବାର କୌଣସି ଉପାୟ ନାହିଁ । ସେତେବେଳେ ଦେଶର ଗୃହଅତ୍ତେ ଲୋକମାନଙ୍କର ମନର ଅବସ୍ଥା କିପରି, ତାହା ନିଜେ ଯେ ଅନୁଭବ କରି ନାହିଁ, ତାଙ୍କୁ ଲେଖି ବୁଝାଇବା ସହଜ ନୁହେ । ଏହି ସମୟରେ ଆମ୍ଭେମାନେ ମହାତ୍ମାଜୀଙ୍କ ସହ ବମ୍ବେଇ ସହରରେ ଥାଉଁ । ସେ ସମୟରେ ଯାହା ଶୁଣିଛୁ, ତାହା ପାଠକମାନଙ୍କୁ ଲେଖି ବୁଝାଇ ପାରୁ ନାହୁଁ । ପଞ୍ଜାବରୁ ବେଳେ ବେଳେ କେତେକ ଲୋକ ପ୍ରାଣ ବିକଳରେ ଲୁଚି ପଳାଇ ଆସୁଥାନ୍ତି । ସେମାନଙ୍କର ଦୁଃଖର କାହାଣୀ ମହାତ୍ମାଜୀଙ୍କୁ ଶୁଣାଇ ଯାଉଥାନ୍ତି । ସେ ସବୁ ହୃଦୟବିଦାରକ କାହାଣୀ ଶୁଣିଲେ ପଥର ପାଣି ହୋଇଯିବ । ସେ ଯାହାହେଉ ପଞ୍ଜାବର ଅତ୍ୟାଚାରର ବର୍ଣ୍ଣନା କରିବାର ଏ ସ୍ଥଳ ନୁହେ । ପାଠକମାନେ ମହାତ୍ମାଜୀଙ୍କ କଥା ଶୁଣନ୍ତୁ ।

ସେ ଏହି ସମୟରେ ବଡ଼ ଧୀର ସ୍ଥିର ଭାବରେ ରହି କର୍ତ୍ତବ୍ୟ ଚିନ୍ତା କରୁଥାନ୍ତି । ଦରକାର ପଡ଼ିଲେ ପଞ୍ଜାବକୁ ଯାଇ ସେଠାରେ ସମସ୍ତ ଘଟଣା ତଦନ୍ତ କରିବା ସକାଶେ ଗୋଟିଏ ସେବକ ଦଳ ଗଠନ କଲେ । ପଞ୍ଜାବର ଅତ୍ୟାଚାର ତଦନ୍ତ କରିବାପାଇଁ ବିଲାତରେ ପାର୍ଲିୟାମେଣ୍ଟ ଗୋଟିଏ କମିଟି ବସାନ୍ତୁ, ଏହି ଦାବି କରିବାପାଇଁ ସମସ୍ତ ଦେଶରେ ବହୁ ଚେଷ୍ଟା ହେଲା । ପଞ୍ଜାବର ଅନ୍ୟାୟ ଅତ୍ୟାଚାରରେ ପ୍ରପୀଡ଼ିତ ଲୋକମାନଙ୍କର ସେବାପାଇଁ ଦେଶରୁ ଅର୍ଥଭିକ୍ଷାର ଚେଷ୍ଟା ଆରମ୍ଭ ହେଲା । ସେ ନୀରବରେ ଏ ସବୁ କାର୍ଯ୍ୟ କରୁଥାନ୍ତି । କାରଣ କୌଣସି ଘଟଣାର ଆମୂଳ ଚୂଳ ନ ଜାଣିଲେ ସେ ପଦାକୁ ବାହାରି କିଛି କରନ୍ତି ନାହିଁ । ଛଅ ମାସ ପରେ ସେ ସତ୍ୟାଗ୍ରହ ଆରମ୍ଭ କରିବାକୁ କହିଥିଲେ । ସେହି ଛଅ ମାସ ଗତ ହେଲା, ସେ ସତ୍ୟାଗ୍ରହର ନିୟମଲଙ୍ଘନ ଶାଖାଟି ବନ୍ଦ କରି ସଂଯମ ଅଭ୍ୟାସ କରିବା ସକାଶେ ସତ୍ୟାଗ୍ରହି-ମାନଙ୍କୁ ଉପଦେଶ ଦେଲେ । ପଞ୍ଜାବ ଅତ୍ୟାଚାରର ମୀମାଂସା କରିବାପାଇଁ ଦେଶବାସିଙ୍କର ପ୍ରସ୍ତୁତ ହେବାର ବର୍ତ୍ତମାନ ଉପଯୁକ୍ତ ସମୟ । ରାଉଲାଟ ଆଇନ୍ ପରର କଥା । ଏହି ଆଇନ୍ ସରକାର ଉଠାଇ ନେବେ, ତାହା ନ

କଠ ତାଙ୍କର ଅଉ ଉପାୟ ନାହିଁ । ଦେଶ ଯେତେବେଳେ ନିଜର କର୍ତ୍ତବ୍ୟ ବୁଝି ପାରିଅଛି, ସେତେବେଳେ ଅମ୍ଭମାନଙ୍କ ସତ୍ୟାଗ୍ରହର ଉଦ୍ଦେଶ୍ୟ ସିଦ୍ଧ ହୋଇଅଛି । ବର୍ତ୍ତମାନ ପଞ୍ଜାବ କଥା ଭୁଲିଗଲେ ଚଳିବ ନାହିଁ ।

## ଚତୁର୍ଦ୍ଦଶ ଅଧ୍ୟାୟ ।

ଇତିମଧ୍ୟରେ ପଞ୍ଜାବରୁ କ୍ରମେ କ୍ରମେ ସୈନିକ ଆଇନ ଉଠିଗଲା । ଭାରତର ବିଭିନ୍ନ ପ୍ରଦେଶରୁ ବହୁ ଲୋକ ଯାଇ ପଞ୍ଜାବ ପ୍ରଦେଶରେ ଉପସ୍ଥିତ ହୋଇଗଲେ । ଟଙ୍କା ପଇସା ମଧ୍ୟ ଜମା ହୋଇଗଲା । ପଞ୍ଜାବୀମାନଙ୍କର ସେବାରେ ଲୋକେ ଲାଗିଗଲେ । ଏଣେ ଠିକ୍ ସମୟରେ ଭାରତସରକାର ପଞ୍ଜାବ ବିଷୟ ତଦନ୍ତ କରିବାକୁ ଗୋଟିଏ କମିଶନ ବସାଇଲେ । ହଣ୍ଟର ସାହେବ ବୋଲି ଜଣେ ବଡ଼ଲୋକ ବିଲାତରୁ ଉକ୍ତ କମିଶନର ସଭାପତି ହୋଇ ଆସିଲେ । ତାହାଙ୍କ ନାମ ଅନୁସାରେ କମିଟି ନାମ ହେଲା ହଣ୍ଟର କମିଟି । କିନ୍ତୁ ଏହି କମିଟିରେ ଯେଉଁମାନେ ସଭ୍ୟ ମନୋନୀତ ହେଲେ, ସେମାନଙ୍କୁ ଭାରତର ଲୋକମାନେ ପସନ୍ଦ କଲେ ନାହିଁ । ସେମାନେ ମୂଳରୁ ଆପତ୍ତି କଲେ ଯେ, ଭାରତ ସରକାର ଏହି କମିଟି ନ କରି ବିଲାତର ପାର୍ଲିଅମେଣ୍ଟ ଗୋଟିଏ କମିଟି ନିଯୁକ୍ତ କରନ୍ତୁ । କିନ୍ତୁ ମହାତ୍ମା ଗାନ୍ଧୀ ଏହି ସମୟରେ ଦେଶବାସିମାନଙ୍କୁ ଧୀର ସ୍ଥିରଭାବରେ ସବୁ ବିଚାର କରିବାକୁ କହି ପ୍ରଚାର କରିଥିଲେ ଯେ, ଭାରତସରକାର ଯାହା କରୁଛନ୍ତି ତହିଁରେ ସମସ୍ତେ ସନ୍ତୁଷ୍ଟ ରହନ୍ତୁ । ଦେଖାଯାଉ ସେ କଣ କରୁଛନ୍ତି । ଆମ୍ଭେମାନେ ନିଜ ଗୋଡ଼ରେ ଠିଆ ନ ହେଲେ କେହି ଆମ୍ଭ କଥା ଶୁଣିବେ ନାହିଁ । ସରକାରଙ୍କ ସହ ସବୁବେଳେ କଳି ଲଗାଇଲେ ଚଳିବ କିପରି ?

ଏହାପରେ ହଣ୍ଟାର କମିଟି ବସିଲା । ପଞ୍ଜାବ ବିଷୟ ତଦନ୍ତ ହେବ । ଏପର୍ଯ୍ୟନ୍ତ ପଞ୍ଜାବକୁ ଯିବାକୁ ମହାତ୍ମା ଗାନ୍ଧୀଙ୍କୁ ଅନୁମତି ମିଳି ନାହିଁ । ଠିକ୍ ଏହି ସମୟରେ ତାହାଙ୍କୁ ପଞ୍ଜାବ ଯିବାକୁ ଅନୁମତି ମିଳିଲା । ଅନୁମତି ପାଇ ସେ ଅବିଳମ୍ବେ ପଞ୍ଜାବ ଯାତ୍ରା କଲେ । ତାହାଙ୍କର ପଞ୍ଜାବରେ ଉପସ୍ଥିତି ପରେ ସେଠାରେ କଣ ଘଟିଥିଲା, ତାହା ସେଠାରେ ଥାଇ ନିଜେ ଯେ ଅନୁଭବ ନ କରନ୍ତି, ତାହାକୁ ଲେଖି ବୁଝାଇବା ସହଜ ନୁହେ । ସୈନିକ ଆଇନରେ ପଞ୍ଜାବ ମୃତପ୍ରାୟ ହୋଇ ଯାଇଥିଲା । ଏପରି କି, ସେଠାର ଲୋକେ ମହାତ୍ମା ଗାନ୍ଧୀଙ୍କର ନାମ ନେବାକୁ ପ୍ରାଣରେ ଡରୁଥିଲେ । ହଣ୍ଟର କମିଟି ବସିଲା ସତ, କିନ୍ତୁ କମିଟି ଆଗରେ ସତ କଥା କହିବ କିଏ ? ଏହା ଆଗରୁ ଦେଶର ଅନ୍ୟାନ୍ୟ ଅନେକ ନେତା ଯାଇ ସେଠାରେ ନାନା ଢଙ୍ଗରେ ନାନା ଉଦ୍ୟମ କରାଇଅଛନ୍ତି । ଲୋକମାନଙ୍କୁ ଆଶ୍ୱାସନାବାଣୀ ଶୁଣାଉଅଛନ୍ତି । କିନ୍ତୁ ତହିଁରେ କିଛି ଫଳ ହୋଇ ନାହିଁ । ଏପରି ଅବସ୍ଥାରେ ମହାତ୍ମାଜୀ ଯାଇ ପଞ୍ଜାବରେ ଉପସ୍ଥିତ ହେଲେ । ସେ ଉପସ୍ଥିତ ହେବାମାତ୍ରକେ ସମସ୍ତ ପଞ୍ଜାବରେ ଏକ ନୂତନ ଭାବ ଖେଳିଗଲା । ପଞ୍ଜାବର ଆବାଳବୃଦ୍ଧବନିତା ସମସ୍ତେ ପୁଣି ଚେଇଁ ଉଠିଲେ । ସେ ଯେଉଁଆଡ଼େ ଗଲେ, ହଜାର ହଜାର ଲୋକ ତାହାଙ୍କର ଦର୍ଶନପାଇଁ ଏକତ୍ରିତ ହେଲେ । ତାହାଙ୍କ କଥାରେ ପଞ୍ଜାବ ଅତ୍ୟାଚାରର ସମସ୍ତ ତଥ୍ୟ ବାହାରକୁ ଜଣା ପଡିଗଲା । କିନ୍ତୁ ହଣ୍ଟର କମିଟି ସହ ସେ ଅସହଯୋଗ କରିଥିଲେ । କାରଣ ମହାତ୍ମା ଗାନ୍ଧୀ ସରକାରଙ୍କ ସଙ୍ଗରେ କେତେଗୁଡିଏ ଚୁକ୍ତି କରିଥିଲେ । ସରକାର ସେହି ଚୁକ୍ତିଗୁଡିକ ପାଳି ତଦନ୍ତ କରିବାକୁ ସ୍ୱୀକୃତ ନ ହେବାରୁ ହଣ୍ଟର କମିଟିକୁ ସେ ବର୍ଜନ କରିଥିଲେ । ଭାରତର ଜାତୀୟ ମହାସଭା କଂଗ୍ରେସ ପକ୍ଷରୁ ଗୋଟିଏ କମିଟି ବସିଲା । ମହାତ୍ମା ଗାନ୍ଧୀ ତହିଁରେ ରହି ସମସ୍ତ ବିଷୟ ତଦନ୍ତ କରି କଂଗ୍ରେସ ଓ ବିଲାତର ପାର୍ଲିଆମେଣ୍ଟ ସମକ୍ଷରେ ଗୋଟିଏ ରିପୋର୍ଟ ଦାଖଲ କଲେ । ହଣ୍ଟର କମିଟି ମଧ୍ୟ ଗୋଟିଏ ରିପୋର୍ଟ ଯଥାସମୟରେ ଦାଖଲ କଲେ । ଏହାପରେ ବିଲାତର ସରକାରଙ୍କ ଆଗରେ ଦୁଇଟି ରିପୋର୍ଟ ଦାଖଲ ହେଲା ।

ଇତିମଧ୍ୟରେ ଡିସେମ୍ବର ମାସ ବଡ଼ଦିନ ଛୁଟିରେ ପଞ୍ଜାବର ଅମୃତସର ନଗରରେ ଭାରତର ଜାତୀୟମହାସଭାର ଏକ ବୈଠକ ହେଲା । ଏହି ଠାରେ ନୂତନ ଶାସନସଂସ୍କାର ପଦ୍ଧତି (Reformed Scheme) ବିଶେଷଭାବରେ ଆଲୋଚିତ ହୋଇଥିଲା । ଏହି ଆଲୋଚନା ସମୟରେ ତିଳକ ମହାରାଜ ଓ ମହାତ୍ମା ଗାନ୍ଧୀ ଉଭୟଙ୍କ ମଧ୍ୟରେ ଶାସନପରିବର୍ତ୍ତନର କେତେକ ବିଷୟ ନେଇ ବିଶେଷ ମତଭେଦ ହେଲା । ତିଳକ ମହାରାଜ କହିଲେ, ଶାସନପରିବର୍ତ୍ତନ ପଦ୍ଧତିକୁ ଗ୍ରହଣକରି କାଉନ୍‌ସିଲକୁ ଯିବା । କିନ୍ତୁ ସରକାରଙ୍କ ସହ ସହଯୋଗ ନ କରି ତାଙ୍କ କାର୍ଯ୍ୟରେ ବାଧା ଦେବା । ମହାତ୍ମା ଗାନ୍ଧୀ କହିଲେ, ଏପରି କାର୍ଯ୍ୟ ଆମ୍ଭ ପକ୍ଷରେ ଶୋଭନୀୟ ନୁହେ । ଶାସନପରିବର୍ତ୍ତନ ନୀତିକୁ ଯଦି ଗ୍ରହଣ କଲେ, ତେବେ ସରକାରଙ୍କ ସଙ୍ଗେ ସହଯୋଗ କରିବା । ସହଯୋଗ ନ କରିବା ଆମ୍ଭର କାପୁରୁଷତାର ପରିଚୟ ଦେବ । ଶାସନସଂସ୍କାର ନୀତିକୁ ଯଦି ପରିବର୍ଜନ କରିବାର ହୁଏ, ତେବେ ଏକାବେଳେକେ ବର୍ଜନ କରିବା । ଏପର୍ଯ୍ୟନ୍ତ ସରକାର କେଉଁଣସି କାର୍ଯ୍ୟରେ ଆମ୍ଭମାନଙ୍କୁ ଡାକି ନ ଥିଲେ । ବର୍ତ୍ତମାନ ଡାକି କହୁଛନ୍ତି ଯେ, ଆସ, ସମସ୍ତେ ମିଶି ଭାରତର ଯହିଁରେ ଉପକାର ହେବ, ତାହାହିଁ କରିବା । ତାଙ୍କ କଥା ପରୀକ୍ଷା କରିବା ଆମ୍ଭମାନଙ୍କର ଦରକାର । ଅବଶ୍ୟ ସେମାନେ ଅଦ୍ୟପର୍ଯ୍ୟନ୍ତ ଯାହା କରି ଆସିଛନ୍ତି, ତାହା ଦେଖିଲେ ଆଉ ପରୀକ୍ଷାର ସମୟ ନାହିଁ । କିନ୍ତୁ ତାହାଙ୍କ ନୀତିକୁ ଗ୍ରହଣ କରି ଏକ ମନରେ ତାଙ୍କ ସଙ୍ଗେ କାର୍ଯ୍ୟ ନ କରିବା କେବଳ ଦୁର୍ବଳତାର ଚିହ୍ନ ଅଟେ । ଦୁର୍ବଳ ବ୍ୟକ୍ତି ସର୍ବଦା ବଳବାନ୍ ସହ କାର୍ଯ୍ୟ କରିବାକୁ ଡରେ । କିନ୍ତୁ ଯାହାର ବଳ ଥାଏ, ସେ ବିଶ୍ୱାସ ଥିବା ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ମିଳି ମିଶି କାର୍ଯ୍ୟ କରି ଚାଲିଯାଏ । ସରକାର ଆଜି ତାଙ୍କ ସହ ମିଳି କାର୍ଯ୍ୟ କରିବାକୁ ଡାକୁଛନ୍ତି । ତାଙ୍କ କଥାନୁସାରେ କାର୍ଯ୍ୟ କରିବା ବର୍ତ୍ତମାନ ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଆମ୍ଭେ ସେମାନଙ୍କ କଥାରେ ବିଶ୍ୱାସ ରଖି କାର୍ଯ୍ୟ କରିବା । ଯେଉଁଠାରେ ଦେଖିବା ଯେ, ସେ ଆମ୍ଭର କ୍ଷତି କରିବାକୁ ବସିଛନ୍ତି, ସେଠାରେ ଆମ୍ଭେମାନେ

ସେମାନଙ୍କ କାର୍ଯ୍ୟରେ ବାଧା ଦେବା । କିନ୍ତୁ କେବଳ ସେମାନଙ୍କ କାର୍ଯ୍ୟରେ ସବୁବେଳେ ବାଧା ଦେଉଥିବା, ଏହି ନୀତି ଅବଲମ୍ବନ କରି ଶାସନ ସଂସ୍କାର ପଦ୍ଧତିକୁ ଗ୍ରହଣ କରିବା କଦାପି ଉଚିତ ନୁହେଁ ।

ପଞ୍ଜାବ ଓ ଖିଲାଫତ ଉଭୟ ବିଷୟରେ ଏପର୍ଯ୍ୟନ୍ତ କୌଣସି ମୀମାଂସା ହୋଇ ନାହିଁ । ମୋର ବିଶ୍ୱାସ, ଇଂରେଜ କର୍ମଚାରୀମାନେ ପଞ୍ଜାବରେ ଯାହା କରିଛନ୍ତି, ତାହା ସେମାନେ ବୁଝି ପାରିବେ । ଇଂରେଜ ପ୍ରଜାମାନେ ମଧ୍ୟ ଏହି ପାପ ବୁଝି ତାହାର ଯଥାଯୋଗ୍ୟ ପ୍ରାୟଶ୍ଚିତ୍ତ କରିବେ । ଖିଲାଫତର ମୀମାଂସା ମଧ୍ୟ ନ୍ୟାୟସଙ୍ଗତ ହେବ ବୋଲି ମୋର ବିଶ୍ୱାସ ଅଛି । ଏହି ଦୁଇଟି ବିଷୟ ଇଂରେଜ ସରକାରଙ୍କ ପକ୍ଷରେ କଷ୍ଟି ପଥର ପରି । ଏଥିରେ ତାଙ୍କର ପ୍ରକୃତିର ପ୍ରକୃତ ପରୀକ୍ଷା ହେବ । କିନ୍ତୁ ଏହି ଦୁଇଟି ବିଷୟର ମୀମାଂସା କିପରି ହେଉଅଛି, ତାହା ନ ଜାଣିବା ପର୍ଯ୍ୟନ୍ତ ଇଂରେଜ ସରକାରଙ୍କ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ରଖି କାର୍ଯ୍ୟ କରିବା ଭାରତର ଏକମାତ୍ର କର୍ତ୍ତବ୍ୟ । ଜଗତର ଲୋକେ ଅନ୍ତତଃ ଦେଖନ୍ତୁ ଯେ, ଆମ୍ଭେମାନେ ବିଶ୍ୱାସରେ ଓ ବନ୍ଧୁଭାବରେ ଇଂରେଜ-ମାନଙ୍କ ସହିତ ରହିବାକୁ ପ୍ରସ୍ତୁତ ଅଛୁଁ । ଏହି କଥା କହି ଇଂରେଜ ସରକାରଙ୍କ ସହିତ ସହଯୋଗ କରିବାକୁ ସେ ସମସ୍ତ ଦେଶବାସିଙ୍କୁ ପ୍ରାର୍ଥନା କରିଥିଲେ ।

କଂଗ୍ରେସ ଶେଷ ହେଲା । ମହାତ୍ମା ଗାନ୍ଧୀ ପଞ୍ଜାବ ରିପୋର୍ଟ ଲେଖିସାରି ବମ୍ବେଇ ସହରକୁ ଫେରି ଆସିଲେ । ବର୍ତ୍ତମାନ ପଞ୍ଜାବ ଅତ୍ୟାଚାର ଓ ମୁସଲ-ମାନ ଭାଇମାନଙ୍କର ଖିଲାଫତ ଏହି ଉଭୟ ବିଷୟରେ କିପରି ନ୍ୟାୟବିଚାର ହେବ, ତାହାର ଚେଷ୍ଟାରେ ରହିଲେ । ସେ ସମସ୍ତ ଭାରତବର୍ଷ ବୁଲି ବୁଲି ପ୍ରଚାର କଲେ ଯେ, ଏହି ଦୁଇଟି ବିଷୟର ନ୍ୟାୟବିଚାର ନ ହେଲେ ଆମ୍ଭ-ଆମ୍ଭମାନଙ୍କୁ ଇଂରେଜ ସରକାରଙ୍କ ସହ ଅସହଯୋଗ କରିବାକୁ ହେବ । ଏହି ସମୟରେ ମଧ୍ୟ ସେ ବଡ଼ ଲାଟ ସାହେବଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଲେ । ଏହି ପତ୍ରଖଣ୍ଡି ବଡ଼ ମହତ୍ତ୍ୱପୂର୍ଣ୍ଣ । ଭାରତସରକାରଙ୍କ ସହ ଅସହଯୋଗ ଆନ୍ଦୋ

କାହିଁକି କରିବାକୁ ପଡ଼ୁଅଛି, ତାହା ଏହି ଦୁଇଟିରୁ ଜଣା ପଡେ । ମହାତ୍ମାଜୀ ଲେଖିଥିଲେ ଯେ, ବଡଲାଟ ସାହେବ ଭାରତସରକାରଙ୍କ ତରଫରୁ ଭାରତ-ବାସିମାନଙ୍କର କଥା ଶାନ୍ତିସଭାରେ (Peace Coference) ପକାନ୍ତୁ । ଇଂରେଜ ପ୍ରଧାନ ମନ୍ତ୍ରିଙ୍କର ମନ ଖିଲାଫତ ପ୍ରଶ୍ନ ପ୍ରତି ଅକୃଷ୍ଟ କରାନ୍ତୁ । ଶାନ୍ତିସଭାରେ ଯଦି ଖିଲାଫତ ପ୍ରଶ୍ନର ଉଚିତ ମୀମାଂସା ନ ହୁଏ, ସେଥିପାଇଁ ଇଂଲଣ୍ଡ ବ୍ରିଟିଶ ମନ୍ତ୍ରିମାନେ ଦାୟୀ । ବଡ଼ଲାଟ ସାହେବ ସ୍ପଷ୍ଟଭାବରେ ବ୍ରିଟିଶ ମନ୍ତ୍ରିମାନଙ୍କୁ ଶୁଣାଇ ଦିଅନ୍ତୁ ଯେ, ଏହି ପ୍ରଶ୍ନର ଉଚିତ ବିଚାର ନ ହେଲେ ସେ ସେମାନଙ୍କର ସମସ୍ତ ଧର୍ମକର୍ମ ଉଠାଇ ଦେବେ । ସରକାର ଯଦି ଭାରତବାସିଙ୍କ ସହଯୋଗ ରଖିବାକୁ ଚାହାନ୍ତି, ତାହାହେଲେ ତାଙ୍କୁ ଭାରତବାସିଙ୍କ ସହ ମିଳାମିଶି ଚଳିବାକୁ ହେବ । ନଚେତ୍ ଭାରତବାସିମାନେ ତାଙ୍କ ଧର୍ମକର୍ମ ଛଡ଼ାଇ ଦେବାକୁ ଚେଷ୍ଟା କରିବେ ।

---

## ପଞ୍ଚଦଶ ଅଧ୍ୟାୟ ।

ଖିଲାଫତ ପ୍ରଶ୍ନ କେବେ ମୀମାଂସିତ ହେବ, ତାହା ଜାଣିବାକୁ କେତେଦିନ ଯାଇ ନ ଥିଲା । ଇତିମଧ୍ୟରେ ଇଂରେଜମାନେ ଯୁଦ୍ଧରେ ଜୟଲାଭ କରିଥିବା ହେତୁ ସରକାର ଭାରତବର୍ଷରେ ଶାନ୍ତିଉତ୍ସବ କରାଇବାକୁ ବସିଲେ । ମହାତ୍ମା ଗାନ୍ଧୀ ଘୋଷଣା କରି ପ୍ରଚାର କଲେ ଯେ, ଭାରତବାସିମାନେ ଏହି ଶାନ୍ତି-ଉତ୍ସବରେ ଯୋଗ ଦେଇ ପାରିବେ ନାହିଁ । ଇଉରୋପୀୟ ଯୁଦ୍ଧ ପରେ ଯେଉଁ ଶାନ୍ତି ସ୍ଥାପିତ ହୋଇଅଛି, ତାହା ଭାରତରେ ଅଶାନ୍ତି ଜନ୍ମାଇଅଛି । ସୁତରାଂ ଭାରତବାସିମାନେ ଶାନ୍ତିଉତ୍ସବରେ ହୃଦୟର ସହିତ ଯୋଗ ଦେଇ ପାରିବେ ନାହିଁ । ମହାତ୍ମାଜୀ ଏହି କଥା ପ୍ରଚାର କଲା ମାତ୍ରକେ ସମସ୍ତ ଭାରତବର୍ଷରେ

ଗୋଟାଏ ଚହଳ ପଡଗଲା ! ଯେଉଁ ଦିନ ସରକାର ଶାନ୍ତିଉତ୍ସବ କରାନ୍ତି, ସେ ଦିନ୍ନ ଭାରତର ଲୋକେ ହରତାଳ କରଥିଲେ । ବର୍ତ୍ତମାନ ସରକାରଙ୍କ ସହିତ ଏହିପରି ଝଣାଓଟରା ଲାଗିଲା । ସରକାର ଏ ସବୁ ଦେଖିଲେ, ବିଲାତର ମନ୍ତ୍ରିମାନେ ମଧ ଏହା ଜାଣିଲେ; ତଥାପି ଖିଲାଫତ୍ କଥାରେ ମନ ଧ୍ୟାନ ଦେଲେ ନାହିଁ । ଅବଶେଷରେ ଶାନ୍ତିସନ୍ଧି ଶେଷ ହେଲା । ଫଳରେ ଜଣା ପଡ଼ିଲା ଯେ, ଖିଲାଫତ୍ ପ୍ରଶ୍ନର ଯେପରି ମୀମାଂସା ହୋଇଅଛି, ତଦ୍ଵାରା ମୁସଲମାନ ଭାଇମାନଙ୍କର ଧର୍ମରେ ବିଶେଷ ଆଘାତ ଲାଗିଅଛି । ହିନ୍ଦୁମାନଙ୍କର ପୁରୀ ବଡ଼ଦେଉଳ ଭାଙ୍ଗି ଦେଲେ ହିନ୍ଦୁ ପ୍ରାଣରେ ଯେ ଅଘାତ ଲାଗନ୍ତା, ମୁସଲମାନ ଭାଇଙ୍କ ପ୍ରାଣରେ ସେହିପରି ଆଘାତ ଲାଗିଅଛି । କେହି କେହି ବୁଝି ନ ପାରି ପଚାରି ପାରନ୍ତି, ମୁସଲମାନ ଧର୍ମର ଯାହା ହେଲା, ହିନ୍ଦୁମାନେ ସେଥିରେ ଲିପ୍ତ ହେବାପାଇଁ ମହାତ୍ମା ଗାନ୍ଧୀ କାହିଁକି ହିନ୍ଦୁମାନଙ୍କୁ କହୁଅଛନ୍ତି ? ଏଠାରେ ଏପରି ପ୍ରଶ୍ନର ଉତ୍ତର ଦେବାର ସ୍ଥଳ ନୁହେ । ତଥାପି ସଂକ୍ଷେପରେ କହିବାକୁ ହେଲେ କହିବାକୁ ହେବ ଯେ, ହିନ୍ଦୁ ମୁସଲମାନ ଦୁଇ ଭାଇ ପରି ଗୋଟିଏ ଦେଶରେ ବାସ କରୁଅଛନ୍ତି । ଦୁଃଖ, ସୁଖ, ହାନି, ଲାଭ ସବୁ ବିଷୟରେ ଦୁହେଁ ମିଳିମିଶି ନ ଚଳିଲେ ଏ ଦେଶ ରହିବ କିପରି ? ଏଥିପାଇଁ ମହାତ୍ମା ଗାନ୍ଧୀ କହିଅଛନ୍ତି, "ମୁସଲମାନ ଧର୍ମ ପ୍ରତି ଯେଉଁ ଅତ୍ୟାଚାର ହୋଇଅଛି, ସେଥିରେ ହିନ୍ଦୁମାନେ ଦୁଃଖ ଓ ସହାନୁଭୂତି ଦେଖାଇ ପ୍ରକୃତ ଭାଇ ଓ ବନ୍ଧୁର କାର୍ଯ୍ୟ କରନ୍ତୁ ।

ଇତିମଧ୍ୟରେ ପଞ୍ଜାବ ଅତ୍ୟାଚାରର ମୀମାଂସା ମଧ ହୋଇଗଲା । ଯୋଡ଼ା ଘାରେ ଚୂନ ଦେବା ସଦୃଶ ପଞ୍ଜାବ ପ୍ରତି ସରକାରଙ୍କର ନ୍ୟାୟବିଚାର ହେଲା । ଏହି ଦୁଇଟି ଜଟିଳ ପ୍ରଶ୍ନର ମୀମାଂସା ସରକାରଙ୍କଦ୍ଵାରା ଯେପରି ଭାବରେ ହେଲା, ତାହା ଦେଖି ଶୁଣି ଇଂରେଜ ରାଜ୍ୟରେ ଘର କରି ରହିବାକୁ କାହାର ବା ମନ ବଳିବ ? ମୁସଲମାନ ଭାଇମାନେ ବର୍ତ୍ତମାନ ମାରିବେ କି ମରିବେ, କିଛି ସ୍ଥିର କରି ପାରିଲେ ନାହିଁ । କିନ୍ତୁ ମହାତ୍ମା ଗାନ୍ଧୀ ସେମାନଙ୍କୁ ନାନା ପ୍ରକାର ଉପଦେଶ ଦେଇ ଶାନ୍ତ କରାଇଲେ । କାଶୀ ବା ବନାରସଠାରେ

ନିଖିଳ ଭାରତବର୍ଷର ଜାତୀୟ ମହାସଭା କଂଗ୍ରେସର କାର୍ଯ୍ୟନିର୍ବାହିକା କମିଟିର ଗୋଟିଏ ବୈଠକ ହେଲା । ଏହି ଦୁଇଟି ବିଷୟ ପ୍ରତି ସରକାର କ୍ଷେପ ବିଚାର କଲେ, ତାହା ଉପରେ ଭାରତବାସିମାନେ କଣ କରିବେ, ଏହା ବିଚାର କରିବା ନିମନ୍ତେ କଲିକତାରେ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ହେବାର ସ୍ଥିର ହେଲା । ଏଣେ ମୁସଲମାନ ଭାଇମାନେ ଏଲାହାବାଦଠାରେ ଏକତ୍ରିତ ହୋଇ ସଙ୍କଳ୍ପ କଲେ ଯେ, ସେମାନେ ଆଉ ଏହି ଇଂରେଜ ସରକାରଙ୍କ ସହିତ କିଛି ସମ୍ବନ୍ଧ ରଖିବେ ନାହିଁ । ମହାତ୍ମା ଗାନ୍ଧୀଙ୍କର ପ୍ରଦର୍ଶିତ ଅସହଯୋଗମାର୍ଗର ଆଶ୍ରୟ ନେଲେ । ଇଂରେଜ ସରକାରଙ୍କ ସହ ଅସହଯୋଗ କେଉଁ ଦିନଠାରୁ ଆରମ୍ଭ କରିବାକୁ ହେବ, ତାହାର ଗୋଟିଏ ଦିନ ସ୍ଥିର ହେଲା । ସେ ଦିନ ସମସ୍ତ ଭାରତବର୍ଷର ଦୋକାନପସରା ବନ୍ଦ ହେଲା । ଲୋକେ ଉପବାସ କରି ଅସହଯୋଗ ଧର୍ମରେ ଦୀକ୍ଷିତ ହେଲେ ।

ଏହା ପରେ ମହାତ୍ମା ଗାନ୍ଧୀ ଭାରତର ସ୍ଥାନେ ସ୍ଥାନେ ବୁଲି ଅସହଯୋଗନୀତି ପ୍ରଚାର କରିବାକୁ ଲାଗିଲେ । ତାହାଙ୍କ ପ୍ରଚାରିତ ବାଣୀ ଶୁଣି ଦେଶର ଲୋକେ ଜାଗି ଉଠିଲେ । ଏହି ସମୟରେ ଶୁଣା ଗଲା, ସମ୍ରାଟ ପଞ୍ଚମ ଜର୍ଜଙ୍କର ବଡ଼ପୁଅ, ଯେ କି ଆମ୍ଭମାନଙ୍କର ଯୁବରାଜ, ସେ ଭାରତବର୍ଷକୁ ଭ୍ରମଣାର୍ଥ ଆସୁଅଛନ୍ତି । କିନ୍ତୁ ମହାତ୍ମା ଗାନ୍ଧୀ ଶୁଣାଇ ଦେଲେ ଯେ, ଭାରତବାସିମାନେ ଯୁବରାଜଙ୍କୁ ହୃଦୟର ସହିତ ଅଭ୍ୟର୍ଥନା କରି ପାରିବେ ନାହିଁ, କିମ୍ବା ତାହାଙ୍କର ଆଗମନରେ କୌଣସି ପ୍ରକାରେ ଉତ୍ସବାଦିରେ ମନ ପ୍ରାଣ ଦେଇ ଯୋଗ ଦେବେ ନାହିଁ । ମହାତ୍ମା ଗାନ୍ଧୀ ଏହି କଥା ପ୍ରଚାର କରି ଦେଲା ପରେ ସରକାର ଶୁଣାଇଲେ ଯେ, ଯୁବରାଜଙ୍କ ଦେହ ଭଲ ନାହିଁ, ସୁତରାଂ ସେ ଭାରତବର୍ଷକୁ ଆସି ପାରିବେ ନାହିଁ । ଇତିମଧ୍ୟରେ କଲିକତାଠାରେ କଂଗ୍ରେସ୍ ବସିବାର ଦିନ ଆସି ଉପସ୍ଥିତ ହେଲା । ଭାରତବର୍ଷର ଭିନ୍ନ ଭିନ୍ନ ଅଞ୍ଚଳରୁ ବହୁ ଲୋକ ଆସି ସମବେତ ହେଲେ । ୧୯୨୦ ମସିହା ସେପେମ୍ବର ମାସରେ ଏହି ସଭା

ବସିଥିଲା । ଅସହଯୋଗ ବିଷୟ ନେଇ ଭାରତରେ ବଡ଼ ତର୍କ ଲାଗିଲା । ସେତେବେଳକୁ ଅନେକ୍ ଲୋକ ଏହି ନୂତନ ଧର୍ମକୁ କେତେକ ପରମାଣରେ ହୃଦୟଙ୍ଗମ କରି ପାରୁଥିଲେ । ଅନେକେ ମଧ୍ୟ ଏହାର ବିରୁଦ୍ଧରେ ଥିଲେ । କିନ୍ତୁ ବହୁଲୋକଙ୍କ ମତ ଅନୁସାରେ କଲିକତା କଂଗ୍ରେସରେ ଅସହଯୋଗ ନୀତି ନିର୍ଦ୍ଧାରିତ ହୋଇ ଗଲା । ଏହିଠାରେ ସ୍ଥିର ହେଲା ଯେ, ଦେଶରେ ସ୍ୱରାଜ୍ୟ ପ୍ରତିଷ୍ଠିତ ନ ହେବା ପର୍ଯ୍ୟନ୍ତ ଭାରତବାସୀମାନଙ୍କୁ ଅସହଯୋଗ ନୀତି ଅବଲମ୍ବନ କରିବାକୁ ପଡ଼ିବ । କଲିକତା କଂଗ୍ରେସରେ ଅନେକେ ଅସହଯୋଗର ବିରୁଦ୍ଧରେ ଥିଲେ । କିନ୍ତୁ ସେହି ବର୍ଷ ଅର୍ଥାତ୍ ୧୯୨୦ ମସିହା ଡ଼ିସେମ୍ବର ମାସର ଶେଷ ସପ୍ତାହ ବଡ଼ଦିନ ଛୁଟିରେ ନାଗପୁରଠାରେ ଯେଉଁ କଂଗ୍ରେସ ବସିଲା, ସେଠାରେ ସମସ୍ତେ ଏକମନ, ଏକପ୍ରାଣରେ ଅସହଯୋଗ ନୀତିକୁ ଗ୍ରହଣ କଲେ । ଏହିଠାରେ ପ୍ରଶ୍ନ ଉଠିଲା, ଆମ୍ଭମାନଙ୍କର ସ୍ୱରାଜ୍ୟ କିପରି ହେବ । ଇଂରେଜମାନେ ଏ ଦେଶରୁ ଏକାବେଳେକେ ଉଠିଯିବେ, ନା ରହିବେ । ବିଲାତର ସରକାରଙ୍କ ସହିତ ଆମ୍ଭମାନଙ୍କର ସମ୍ବନ୍ଧ କିପରି ହେବ । ଇତ୍ୟାଦି । ମହାତ୍ମା ଗାନ୍ଧୀ କହିଥିଲେ, ଇଂରେଜମାନେ ଏ ଦେଶରେ ରହିଲେ ଆମ୍ଭର କିଛି ଆପତ୍ତି ନାହିଁ । ତେବେ ସେମାନଙ୍କୁ ଆମ୍ଭମାନଙ୍କର ଭାଇବନ୍ଧୁ ପରି ରହିବାକୁ ପଡ଼ିବ । ଆମ୍ଭର ହାକିମ ହୋଇ ରହିବାକୁ ଯଦି ସେମାଙ୍କର ଇଚ୍ଛା ଥାଏ, ତେବେ ସେମାନଙ୍କର ଏ ଦେଶରେ ସ୍ଥାନ ନାହିଁ । ବିଲାତ ସରକାରଙ୍କ ସହି ସମ୍ବନ୍ଧ, ଏହି ପ୍ରଶ୍ନ ପରେ ମୀମାଂସିତ ହେବ । ପ୍ରଥମେ ଆମ୍ଭ ଦେଶରେ ସ୍ୱରାଜ୍ୟ ହେଉ । ସ୍ୱରାଜ୍ୟ ହେଲା ପରେ ଦେଖିବାକୁ ହେବ, ବିଲାତ ସହି ମିଳିମିଶି ଚଳିଲେ ଆମ୍ଭର ଭଲ ହେବ, କି ତାହା ସହିତ ସମସ୍ତ ସମ୍ପର୍କ ତୁଟାଇ ଦେଲେ ଆମ୍ଭର ମଙ୍ଗଳ ହେବ । ବିଲାତର ସମ୍ବନ୍ଧ ଯଦି ଆମ୍ଭର ଉନ୍ନତି ପଥରେ କଣ୍ଟକ ହୁଏ, ତାହାହେଲେ ସେ କଣ୍ଟକକୁ ନିଶ୍ଚୟ ଉପାଡ଼ି ଫିଙ୍ଗି ଦେବାକୁ ହେବ । କିନ୍ତୁ ସେ ସବୁ ବିଚାର କରିବାର ସମୟ ବର୍ତ୍ତମାନ ଆସି ନାହିଁ । ଏହିକ୍ଷଣି କଂଗ୍ରେସର କଥା ମାନି ସମସ୍ତଙ୍କର ଚଳିବା ନିତାନ୍ତ ଅବଶ୍ୟକ । ଭାରତବର୍ଷର

ବର୍ତ୍ତମାନ ଅବସ୍ଥା ଯେପରି, ତାହାର ପରିବର୍ତ୍ତନ ନିମିତ୍ତ ଅସହଯୋଗ ଏକମାତ୍ର ପଥ । ଅସହଯୋଗ କେବଳ ଗୋଟିଏ ରାଜନୈତିକ ଆନ୍ଦୋଳନ ନୁହେ । ଦେଶରେ ଏହା ଗୋଟିଏ ନୂତନ ଧର୍ମର ଅନ୍ଦୋଳନ । ଗୀତାରେ ଶ୍ରୀକୃଷ୍ଣ କହିଅଛନ୍ତି ଦେଶରେ ପାପ, ଅନ୍ୟାୟ ଓ ଅବିଚାରର ମାତ୍ରା ବଢ଼ିଗଲେ ଦେଶରେ ପାଷଣ୍ଡର ସଂଖ୍ୟା ଅତ୍ୟନ୍ତ ବୃଦ୍ଧି ହେଲେ ଭଗବାନ୍ ନିଜେ ଅବତାରରୂପରେ ଜନ୍ମଗ୍ରହଣ କରି ପୁଣି ଧର୍ମର ସଂସ୍ଥାପନା କରନ୍ତି । ଭାରତବର୍ଷରେ ଆଜ ଯେ ଅକାର୍ଯ୍ୟମାନ ଘଟୁଅଛି, ତାହାର ପ୍ରତିବିଧାନପାଇଁ ଏହି ଅସହଯୋଗ ଧର୍ମ ଛଡ଼ା ଅନ୍ୟ କିଛି ଉପାୟ ଅଛି ବୋଲି ମନେ ହୁଏ ନାହିଁ । ଏହା ସେହି ଭଗବାନଙ୍କ ଇପ୍ସିତ ଧର୍ମ ବୋଲି ପ୍ରତୀତ ହୁଏ ।

ଆଜ କାଲି ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ ଉଠୁଅଛି, ଏହି ମହାତ୍ମା ଗାନ୍ଧୀ କିଏ ? ଏଡ଼େ ବଡ଼ ଭାରତବର୍ଷରେ ଘରେ ଘରେ ଆଜ ତାହାଙ୍କ ନାମ ମୁଖରିତ । ଏପରି କି ତିନି ଚାରି ବର୍ଷର ବାଳକ ବାଳିକାମାନଙ୍କ ମୁଖରୁ ମଧ୍ୟ ତାହାଙ୍କର ଜୟବାଣୀ ଶୁଣା ଯାଏ । ଏ ସବୁ ଦେଖି ଭାରତବର୍ଷର ଲୋକେ କିଣ କହୁଛନ୍ତି, ସେମାନଙ୍କ ବିଶ୍ୱାସ କିଣ, ତାହା ମୋହର କହିବାର ଆବଶ୍ୟକ ନାହିଁ । ମାତ୍ର ବିଲାତରେ ଜଣେ ସାହେବ କହିଛନ୍ତି, ମହାତ୍ମା ଗାନ୍ଧୀଙ୍କୁ ଯୀଶୁ ଖ୍ରୀଷ୍ଟଙ୍କ ସହିତ ତୁଳନା କଲେ ଏହା କଦାପି ଗୋଟାଏ ହାସ୍ୟାସ୍ପଦ କଥା ହେବ ନାହିଁ । ଯିଶୁ ଖ୍ରୀଷ୍ଟ ସତ୍ୟପାଇଁ ପ୍ରାଣ ବଳି ଦେଇଥିଲେ । ମହାତ୍ମା ଗାନ୍ଧୀ ଏହି ସତ୍ୟପାଇଁ ଅନ୍ୟାୟ ଓ ଅବିଚାରର ବିରୁଦ୍ଧରେ କିପରି ସଂଗ୍ରାମ କରି ଆସୁଛନ୍ତି, ତାହା ତାହାଙ୍କର ପ୍ରତିଦିନର ଜୀବନକାହାଣୀ ପରିଚୟ ଦିଏ । କେତେ ଥର ବା ତାହାଙ୍କର ଜୀବନ ମୃତ୍ୟୁସଙ୍କଟାପନ୍ନ ହୋଇ ନାହିଁ । ଆଜି ସେ କିପରି ଅକ୍ଳାନ୍ତ ଭାବରେ ଭାରତବାସୀର ମୁକ୍ତିପାଇଁ କାର୍ଯ୍ୟ କରୁଛନ୍ତି ।

ଦିନ ନାହିଁ, ରାତି ନାହିଁ, ଅନବରତ ପରିଶ୍ରମ । ତାହାଙ୍କର ଶରୀର ଅତ୍ୟନ୍ତ ରୁଗ୍ଣ ଓ ଦୁର୍ବଳ । ତଥାପି ଶରୀର ପ୍ରତି ତାହାଙ୍କର ଭ୍ରୂକ୍ଷେପ ନାହିଁ ।

ଡାକ୍ତରମାନେ ପରେ ତାହାଙ୍କୁ ଅନ୍ତତଃ ଏକ ସପ୍ତାହ ବିଶ୍ରାମ ନେବାକୁ ଅନୁରୋଧ କରିଥିଲେ । କିନ୍ତୁ ମହାତ୍ମାଜୀ କହିଥିଲେ, "ମୋ ଆଖି ଆଗରେ ଲୋକେ ଅନ୍ୟାୟ ଅତ୍ୟାଚାରରେ ପଡ଼ି ପେଷି ହୋଇ ଯାଉଥିବା ସ୍ଥଳେ ମୁଁ ବିଶ୍ରାମ ନେବା ମୋ ପକ୍ଷରେ ଅସମ୍ଭବ । ସ୍ୱରାଜ୍ୟ ପ୍ରତିଷ୍ଠିତ ନ ହେବା ପର୍ଯ୍ୟନ୍ତ ମୋହର ବିଶ୍ରାମର ସମୟ ନାହିଁ ।

ଅସହଯୋଗ ନୀତି କଣ, ଏହା ବୁଝାଇବାର ଏ ସ୍ଥାନ ନୁହେ ତଥାପି ଏ ବିଷୟରେ କିଛି ନ କହି ରହି ହେଉ ନାହିଁ । ପ୍ରଥମତଃ ଏହି ଅସହଯୋଗ ନୀତିକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମ ଭାଗ :—ଅନ୍ୟାୟ ଓ ପାପରୁ ଦୂରରେ ରହିବା । ଦ୍ୱିତୀୟ ଭାଗ :—ସନ୍ତଙ୍କର ଧର୍ମପଥ ଅନୁସରଣ କରି ଈଶ୍ୱରଙ୍କ ଉପରେ ସମସ୍ତ ଅର୍ପଣ କରିଦେବା । ବର୍ତ୍ତମାନ ଇଂରେଜ ଶାସନନୀତି ଅନ୍ୟାୟ, ଅବିଚାର, ରକ୍ତପାତ ପ୍ରଭୃତିରେ ପରିପୂର୍ଣ୍ଣ । ସେଥିରୁ ମୁକ୍ତିଲାଭ କରିବାକୁ ହେଲେ ଯେପରି ପାପର ସମ୍ପର୍କ ଛାଡ଼ିବାକୁ ହୁଏ, ସେହିପରି ଦେଶରେ ନ୍ୟାୟ ଓ ସୁଶାସନର ପ୍ରତିଷ୍ଠା କରିବାକୁ ହେଲେ, ଏହି ଇଂରେଜ ସରକାରଙ୍କ ସହ ଆମ୍ଭମାନଙ୍କ ସମସ୍ତ ସମ୍ବନ୍ଧ ଛିଣ୍ଡାଇଦେବାକୁ ହେବ । ନିଜକୁ ନିଜେ ରକ୍ଷା କରିବାପାଇଁ ଆପଣା ଆପଣା ମଧ୍ୟରେ ଭାଇ ପରି ବ୍ୟବହାର କରିବା ଦରକାର । ନିଜ ମଧ୍ୟରେ ଯାହା ଦୋଷ ଅଛି, ତାହା ତ୍ୟାଗ କରିବା ଦରକାର । ଦ୍ୱେଷ, ହିଂସା ଏ ସବୁରୁ ହୃଦୟକୁ ନିର୍ମଳ ରଖି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବାକୁ ହେବ, ଯେପରି ଏହି ଅନ୍ୟାୟ ଓ ଅତ୍ୟାଚାରରୁ ଭାରତବର୍ଷ ମୁକ୍ତି ପାଉ । ଦେଶରେ ଅବସ୍ଥା ପରିବର୍ତ୍ତନ ହେଉ । ସର୍ବେ ସୁଖିନଃ ଭବନ୍ତୁ ।



# ମହାତ୍ମାଙ୍କର ପାରିବାରିକ ଜୀବନ ।

ମହାତ୍ମା ଗାନ୍ଧୀ ବର୍ତ୍ତମାନ ଗୃହରେ ଥାଇ ସୁଦ୍ଧା ଜଣେ ସନ୍ନ୍ୟାସୀ କହିଲେ ଚଳେ । ତାହାଙ୍କର ପୈତୃ ପିତାମହ ଉପାର୍ଜିତ ସମ୍ପତ୍ତି ସବୁ ସେ ଦେଶ କାର୍ଯ୍ୟରେ ବ୍ୟୟ କରିଅଛନ୍ତି । ତାହାଙ୍କର ସହଧର୍ମିଣୀ ଓ ପୁତ୍ରମାନେ ସମସ୍ତେ ତାହାଙ୍କ ଧର୍ମରେ ଦୀକ୍ଷିତ । କେବଳ ବଡ଼ ପୁଅ ନୁହେ । ପିଲାକାଳରୁ ସେ ମହାତ୍ମାଙ୍କ ନିକଟରେ ନ ଥିଲେ । ଘରେ ଖୁଡ଼ୁତାମାନଙ୍କ ନିକଟରେ ରହି ତାଙ୍କର ଜୀବନ ଅନ୍ୟ ଛାଞ୍ଚରେ ଗଢ଼ା ହୋଇଅଛି । ମହାତ୍ମାଜୀଙ୍କର ଜ୍ୟେଷ୍ଠ-ପୁତ୍ର ହୋଇ ସେ ସତ୍ୟାଗ୍ରହ ଧର୍ମ ଗ୍ରହଣ କରି ନାହାନ୍ତି । ତେଣୁ ପିତାଙ୍କ ନିକଟରୁ ଅଲଗା ରହି କଲିକତାରେ ଦେଶୀ କିନିଷର ବ୍ୟବସାୟ କରନ୍ତି । ମଝିଆଁ ଦୁଇ ପୁଅ ବର୍ତ୍ତମାନ ପର୍ଯ୍ୟନ୍ତ ଦକ୍ଷିଣ ଆଫ୍ରିକାରେ ରହି ସେଠାରେ ଲୋକସେବା କରୁଅଛନ୍ତି । ସାନ ପୁଅଟି ସର୍ବଦା ତାହାଙ୍କ ସଙ୍ଗରେ ଥାଏ । ତାର ବୟସ ୧୯ ବର୍ଷ ହେବ । ବଡ଼ ପୁଅକୁ ଛାଡ଼ିଦେଲେ ବାକି ତିନି ପୁଅ ମଧ୍ୟରୁ କେହି ସ୍କୁଲ କଲେଜରେ ପଢ଼ି ନାହାନ୍ତି । ମହାତ୍ମାଜୀ ନିଜେ ସେମାନଙ୍କୁ ଘରେ ଘରେ ଶିକ୍ଷା ଦେଇଅଛନ୍ତି । ସେମାନେ ଏପର୍ଯ୍ୟନ୍ତ କେହି ବିବାହ କରି ନାହାନ୍ତି । ମହାତ୍ମାଜୀଙ୍କର ଇଚ୍ଛା ଯେ, ସେମାନେ ବିବାହ ନ କରି ଦେଶର ସେବା କରିବାପାଇଁ ସତ୍ୟାଗ୍ରହ ଧର୍ମ ଅବଲମ୍ବନ କରନ୍ତୁ ଓ ଚିର ବ୍ରହ୍ମଚାରୀ ହୋଇ ଜୀବନ ଯାପନ କରନ୍ତୁ ।

ପୁତ୍ରମାନଙ୍କୁ ଛାଡ଼ିଦେଲେ ତାହାଙ୍କର ସହଧର୍ମିଣୀ ମଧ୍ୟ ତାହାଙ୍କର ଧର୍ମରେ ଦୀକ୍ଷିତା । ମହାତ୍ମାଜୀ ଦକ୍ଷିଣଆଫ୍ରିକାରେ ଜେଲ ଗଲାବେଳେ ସେ ଲୋକମାନଙ୍କୁ ଉତ୍ସାହିତ କରୁଥିଲେ । ନିଜେ ମଧ୍ୟ ଅନେକ ଥର ଜେଲ ଯାଇଥିଲେ । ନିଜର ପୁଅମାନଙ୍କୁ ମଧ୍ୟ ଜେଲ ପଠାଇଅଛନ୍ତି । ସେ ସର୍ବଦା ମହାତ୍ମାଜୀଙ୍କ ସେବାକାର୍ଯ୍ୟରେ ରତ ଥାଆନ୍ତି । ତାହାଙ୍କର ନାମ କସ୍ତୁରୀ ବାଈ ।

# ମହାତ୍ମା ଗାନ୍ଧୀଙ୍କ ଜୀବନର କେତେଗୁଡ଼ିଏ ସ୍ମରଣୀୟ ଘଟଣା ।



## ବିଧବା ପ୍ରତି ସାନ୍ତ୍ୱନା ।

ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ଲଢ଼େଇ ଚାଲୁଥିଲାବେଳେ ସେଠାକାର ସରକାର ନିରୀହ ଭାରତବାସୀମାନଙ୍କ ଉପରେ ଗୁଳି ଚଳାଇଥିଲେ । ଯେତେବେଳେ ଲୋକଙ୍କ ଉପରେ ଗୁଳି ଚାଲୁଥିଲା, ମହାତ୍ମା ଗାନ୍ଧୀ ସେତେବେଳେ ଜେଲଖାନାରେ ଥିଲେ । ଏ ସମ୍ବାଦ ପାଇ ସେ ବଡ଼ ମର୍ମାହତ ହୋଇଥିଲେ । ଯେଉଁଦିନ ସେ ଜେଲରୁ ଖଲାସ ପାଇ ଆସିଲେ, ତାର ଦୁଇଦିନ ପରେ ଗୁଳି ଖାଇଥିବା ଲୋକମାନଙ୍କୁ ଦେଖିବାକୁ ଯାଇଥିଲେ । ସେ ଯାଇ ଦେଖିଲେ ଯେ, ଗୋଟିଏ ଘରେ ଅନେକଗୁଡ଼ିଏ ସ୍ତ୍ରୀ ପୁରୁଷ ଠୁଳ ହୋଇଅଛନ୍ତି । ସେମାନଙ୍କ ମଧ୍ୟରେ କେତେଜଣ ବିଧବା ସ୍ତ୍ରୀ ସେମାନଙ୍କ ପିଲାମାନଙ୍କୁ କୋଳରେ ନେଇ ବସିଅଛନ୍ତି । ସରକାରଙ୍କର ଗୁଳିରେ ଏମାନଙ୍କ ସ୍ୱାମୀମାନେ ହତ ହୋଇଥିଲେ । ମହାତ୍ମା ଗାନ୍ଧୀ ସର୍ବପ୍ରଥମେ ଏହି ବିଧବା ସ୍ତ୍ରୀମାନଙ୍କ ନିକଟରେ ପହଞ୍ଚିଲେ । ବିଧବାମାନେ ମହାତ୍ମାଜୀଙ୍କୁ ଦେଖି ତାଙ୍କ ଗୋଡ଼ତଳେ ପଡ଼ି କାନ୍ଦିବାକୁ ଲାଗିଲେ । ମହାତ୍ମା ବଡ଼ କଷ୍ଟରେ ସେମାନଙ୍କୁ ଉଠାଇ ସେମାନଙ୍କ କାନ୍ଧ ଉପରେ ହାତ ରଖି ନିମ୍ନଲିଖିତ ଭାବରେ ସେମାନଙ୍କୁ ସାନ୍ତ୍ୱନା ଦେଇଥିଲେ ।

"ମା, ତୁମେ ତୁନି ହୁଅ । କାନ୍ଦ ନା । ତୁମ୍ଭଙ୍କୁ କାନ୍ଦିବାର ଦେଖି ମୁଁ ସମ୍ଭାଳି ହୋଇ ପାରୁ ନାହିଁ । ତୁମ୍ଭର ପତି ଅତ୍ୟାଚାରୀମାନଙ୍କ ହାତରେ ମରି ଯାଇଅଛନ୍ତି । ସେ ତ ଈଶ୍ୱରଙ୍କ କୋଳରେ ଯାଇ ବସିଲେଣି । ଦେଶସକାଶେ ସେ ନିଜର ଶରୀର ଅର୍ପଣ କରି ଦେଇଅଛନ୍ତି । ତାଙ୍କର ନାମ ଆଜି ଅମର ହୋଇଅଛି । ସେ କୌଣସି ରୋଗରେ ମରିଥିଲେ, ଆଜି ମୁଁ ଆସି ତୁମ୍ଭ

ଅନ୍ଧାରରେ ଠିଆ ହୋଇ ନ ଥାନ୍ତି । ହୁଏ ତ ସେ ମଲା ବୋଲି କେହି ଜାଣି ନ ଥାନ୍ତେ । ଏହା ତାହାଙ୍କର ପରମ ସୌଭାଗ୍ୟର ଫଳ ଯେ, ସେ ସତ୍‌କାର୍ଯ୍ୟ-ପାଇଁ ତାହାଙ୍କର ଜୀବନକୁ ଦାନ କରି ଦେଇଅଛନ୍ତି । ସୁତରାଂ ତୁମେ ତୁଷ୍ଟ ହୁଅ । ଯେଉଁ ଦିନ ତୁମପରି ଦେଶର ହଜାର ହଜାର ମା ଓ ଭଉଣୀ ବିଧବା ହେବେ, ସେ ଦିନ ଯାଇ ଭାରତମାତାର ମୁକ୍ତି ହେବ । ମୁଁ ମୋର ସମସ୍ତଙ୍କୁ ଭାରତମାତାଙ୍କ ନିକଟରେ ବଳି ଚଢ଼ାଇ ଅଛି । ଯଦି ଅତ୍ୟାଚାରୀ ସରକାର ମୋର ମସ୍ତକ ଛେଦନ କରିଦିଏ ଏବଂ ତୁମ୍ଭପରି ମୋର ସ୍ତ୍ରୀ ମଧ୍ୟ ଗୋଟିଏ ନିରାଶ୍ରିତା ବିଧବା ହୋଇ ବସେ, ତେବେ ମୁଁ ବୁଝିବି ଯେ, ମୋର ଉଦ୍ଦେଶ୍ୟ ସିଦ୍ଧ ହେଲା । ମୋର ଆତ୍ମାକୁ ଶାନ୍ତି ମିଳିଲା । ତୁମ୍ଭେ ଆଉ ଦୁଃଖିତା ହୁଅ ନା, ଆଜଠାରୁ ତୁମେ ମୋର ମା । ମୁଁ ତୁମ କୋଳରେ ନିଜ ମସ୍ତକ ରଖୁଅଛି । ତୁମର ବିଧବା ହେବାର କାରଣ ମୁଁ । ତୁମେ ତୁଷ୍ଟ ହୁଅ ଓ ମତେ କ୍ଷମା ଦିଅ ।" ଏହିପରି କହି ମହାତ୍ମାଜୀ ବିଧବାମାନଙ୍କୁ ପ୍ରଣାମ କରି ସେଠାରୁ ବିଦାୟ ନେଇଥିଲେ । ଏହି ହୃଦୟବିଦାରକ ଦୃଶ୍ୟ ଦେଖି ଅନେକେ ସେଠାରେ ରହି ପାରିଲେ ନାହିଁ । ମହାତ୍ମାଜୀଙ୍କଠାରୁ ଏପରି ସ୍ନେହର ବାଣୀ ଶୁଣି ସମସ୍ତଙ୍କର ହୃଦୟ ତରଳି ଯାଇଥିଲା । ସମସ୍ତେ ନୀରବରେ ନ କାନ୍ଦି ରହି ପାରି ନ ଥିଲେ ।

## ମହାତ୍ମା ଗାନ୍ଧୀଙ୍କର ସାମ୍ୟନୀତି ।

ଶତ୍ରୁ, ମିତ୍ର ସମସ୍ତଙ୍କଠାରେ ସେ ଏହି ନୀତି ପ୍ରୟୋଗ କରନ୍ତି । ଅନ୍ୟାୟୀ ଓ ଅତ୍ୟାଚାରୀ ଲୋକ ନିକଟରେ ଆବଶ୍ୟକ ପଡ଼ିଲେ ଉଦାର ଭାବ ମଧ୍ୟ ସେ ଦେଖାଇଥାନ୍ତି । ଦକ୍ଷିଣ ଆଫ୍ରିକାର ସତ୍ୟାଗ୍ରହ ଲଢ଼ାଇ ସମୟରେ ସରକାରଙ୍କର କଥା ରକ୍ଷା କରିବାକୁ ମହାତ୍ମା ଗାନ୍ଧୀ କିଛି କାର୍ଯ୍ୟ କରି-ଥିଲେ । ତହିଁରେ ଅନେକ ହିନ୍ଦୁ ଓ ମୁସଲମାନ ଭାଇମାନେ ତାହାଙ୍କ ଉପରେ ବିଶେଷ ରାଗି ଯାଇ ତାହାଙ୍କୁ ପ୍ରାଣରେ ମାରି ପକାଇବାକୁ ଷଡ଼ଯନ୍ତ୍ର କରିଥିଲେ । ଏହି ଷଡ଼ଯନ୍ତ୍ରର କଥା ମହାତ୍ମାଜୀଙ୍କ କାନରେ ବାଜିଲା ।

ାବିଧାନରେ ଯିବା ଆସିବା କରିବାପାଇଁ ସମସ୍ତେ ତାହାଙ୍କୁ ଅନୁରୋଧ
ାଲେ । ବନ୍ଧୁମାନଙ୍କ ନିକଟରୁ ଏହିପ୍ରକାର ଅନୁରୋଧ ଶୁଣି ମହାତ୍ମାଜୀ
ାସି କରି କହିଥିଲେ—ତୁମ୍ଭେ ଏତେ ଡରୁଅଛ କାହିଁ ? ମୁଁ ସାବଧାନ କାହା
ାଖରେ ରହିବି ? ଯଦି ମତେ ମୋର ଦେଶଭାଇମାନଙ୍କ ମଧ୍ୟରେ ଚଳାବୁଲା
କରିବାକୁ ହେଲେ ସଶଙ୍କ ଚିତ୍ତରେ ସାବଧାନ ରହିବାକୁ ପଡେ, ତେବେ
ଆଜଠାରୁ ମୋ ପକ୍ଷରେ ନେତୃତ୍ୱ ପଦ ପରିବର୍ଜନ କରିବା ବିଧେୟ ।
ଯେଉଁମାନଙ୍କର ସେବାପାଇଁ ମୁଁ ଏ ଜୀବନକୁ ଉତ୍ସର୍ଗ କରି ଦେଇଅଛି,
ସେମାନଙ୍କୁ ଡରି ଯଦି ମୁଁ ସବୁବେଳେ ଦୂରରେ ରହେଁ, ମୋଠାରୁ ବଳି
ଆଉ ଭୀରୁ କିଏ ଅଛି ? ଦେଶଭାଇମାନଙ୍କ ହାତରେ ମରିବା ଯାହାର
ଭାଗ୍ୟରେ ଘଟେ, ତାଠାରୁ ବଳି ପୁଣ୍ୟବାନ୍ ବ୍ୟକ୍ତି ଅଉ କେହି ନାହାନ୍ତି ।
ଯେଉଁମାନେ ମତେ ମାରି ପକାଇବାକୁ ମନ ବଳାଇଅଛନ୍ତି, ସେମାନଙ୍କର
ବିଶ୍ୱାସ ଯେ, ମୁଁ ମୋର ଦେଶସେବା କାର୍ଯ୍ୟରେ କିଛି ବିଶେଷ ଅନିଷ୍ଟ କରିଅଛି,
ଯାହା କି ସେମାନଙ୍କ ବିଚାରରେ କ୍ଷମା ଦିଆଯାଇ ପାରେ ନାହିଁ । ସେମାନଙ୍କର
ତ ମୋର ଏ ଶରୀରରେ ଅଧିକାର ଅଛି । ସୁତରାଂ ସେମାନଙ୍କୁ ଦୋଷ ଦେବା
ଉଚିତ ନୁହେ । ଦେଶର କାର୍ଯ୍ୟ କରି ସରକାରଙ୍କ ହାତରେ ନ ମରି ଯଦି
ମୁଁ ମୋର ଦେଶର ଭାଇ ବନ୍ଧୁମାନଙ୍କ ହାତରେ ମରେଁ, ତହିଁରେ ମୁଁ ନିଜକୁ
ପରମ ଭାଗ୍ୟବାନ୍ ମନେ କରିବି । ଏହା ଶୁଣି ସମସ୍ତେ ନୀରବ । ସେ ଦିନରୁ
ଆଉ କେହି ସାହସ କରି ଏ କଥା ତାହାଙ୍କ ଆଗରେ ପକାନ୍ତି ନାହିଁ ।

(୩)

ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ଲଢ଼େଇ ସମୟରେ କେତେକ
ଇଉରୋପୀୟ ସାଧୁ ପୁରୁଷ ମହାତ୍ମାଜୀଙ୍କର ଶିଷ୍ୟ ହୋଇଥିଲେ । ସେମାନଙ୍କ
ମଧ୍ୟରୁ କେଲେନବେକ୍ ସାହେବ ଜଣେ । ସେ ଜର୍ମାନିର ଲୋକ । ଦକ୍ଷିଣ
ଆଫ୍ରିକାରେ ଜଣେ ବଡ଼ ଇଞ୍ଜିନିୟର ଥିଲେ । ମାସରେ ହଜାର ହଜାର ଟଙ୍କା
ତାହାଙ୍କର ରୋଜଗାର ହେଉଥିଲା । ସେ ସବୁ ଛାଡ଼ି ଦେଇ ମହାତ୍ମାଜୀଙ୍କ

ସାଥିରେ ରହି ସତ୍ୟାଗ୍ରହ ଲଢ଼େଇରେ ଯୋଗ ଦେଇଥିଲେ ଏବଂ ମହାତ୍ମା ଗାନ୍ଧୀଙ୍କର ଜଣେ ପରମ ଶିଷ୍ୟ ଥିଲେ କହିଲେ ଚଳେ । ମହାତ୍ମାଜୀ ବାଟରେ ଏକାକୀ ଯାଉଥିବା ବେଳେ ତାହାଙ୍କୁ ଧରି ମାରି ପକାଇବାର ଷଡ଼ଯନ୍ତ୍ର କଥା ଶୁଣି ସେ ନିଶ୍ଚିନ୍ତ ହୋଇ ରହି ପାରିଲେ ନାହିଁ । ମହାତ୍ମା ଗାନ୍ଧୀ ଯେତେବେଳେ ବାହାରକୁ ବାହାରନ୍ତି, ସେତେବେଳେ କ୍ୟାଲେନ୍‌ବେକ୍ ସାହେବ ତାଙ୍କ ସାଥିରେ ବାହାରନ୍ତି । ଏପରି କିଛିଦିନ ଗଲା ପରେ ଥରେ ମାହାତ୍ମାଙ୍କର ସନ୍ଦେହ ହେଲା । ସେ ପଚାରିଲେ, ତୁମ୍ଭେ ସବୁବେଳେ ମୋ ପଛେ ପଛେ କିଆଁ ଗୋଡ଼ାଉଛ ? ଏହିପରି ପଚାରୁ ପଚାରୁ ତାଙ୍କ ଦୃଷ୍ଟି କ୍ୟାଲେନ୍‌ବେକ୍ ସାହେବଙ୍କର କୁର୍ତ୍ତାର ପକେଟ ଉପରେ ପଡ଼ିଗଲା । ସନ୍ଦେହରେ ହାତ ପୂରାଇ ଦେଖିଲା ବେଳକୁ ଗୋଟିଏ ହାତ ବନ୍ଧୁକ ବାହାରିଲା । ମହାତ୍ମାଜୀ ରାଗରେ ପଚାରିଲେ, ଏଇଟା କଣ ? ଅଉ ଏଥିରୁ ଗୋଟିଏ ପକେଟରେ ପୂରାଇ ମୋ ସଙ୍ଗେ ସଙ୍ଗେ ବୁଲିବାର ଆବଶ୍ୟକ କଣ ?

କ୍ୟାଲେନ୍‌ବେକ୍ ସାହେବଙ୍କର ତୁଣ୍ଡ ଖିଲି ବାନ୍ଧିଗଲା । ଧୀର ଭାବରେ ଉତ୍ତର ଦେଲେ, "ମୁଁ ଶୁଣିଛି, କେତେକ ବ୍ୟକ୍ତି ଆପଣଙ୍କୁ ଆକ୍ରମଣ କରି ଆପଣଙ୍କୁ ମାରି ପକାଇବେ । ସେଥିପାଇଁ ଦରକାର ପଡ଼ିଲେ ଆପଣଙ୍କୁ ବଞ୍ଚାଇବା ପାଇଁ ମୁଁ ଏହି ହାତବନ୍ଧୁକ ସଙ୍ଗେ ସଙ୍ଗେ ନେଇ ବୁଲୁଅଛି ।"

ଏହା ଶୁଣି ମହାତ୍ମା ଗାନ୍ଧୀ କହିଥିଲେ, ଏଥିରୁ ଜଣା ପଡ଼ୁଛି, ମୋର ରକ୍ଷାର ଭାର ତୁମ୍ଭେ ଯେପରି ମୁଣ୍ଡେଇ ବସିଅଛ । ତୁମ୍ଭେ କଣ ଏହି ହାତ-ବନ୍ଧୁକଦ୍ୱାରା ମୋତେ ରକ୍ଷା କରି ପାରିବ ? ଯଦି ମୋର ପ୍ରାଣ ଏହି ବନ୍ଧୁକ ଉପରେ ନିର୍ଭର କରେ, ତେବେ ଅଣ ଏହିଠାରେ ଆଜ ମୁଁ ଏହି ବନ୍ଧୁକଦ୍ୱାରା ମୋର ପ୍ରାଣକୁ ଶେଷ କରିଦିଏଁ । ତୁମ୍ଭେ କିପରି ରକ୍ଷା କରି ପାର, ମୁଁ ତାହା ଦେଖିବି । ତୁମ୍ଭେ ଯଦି ମୋର ପ୍ରକୃତ ବନ୍ଧୁ ହୋଇଥାନ୍ତ, ତେବେ ଏ ଶରୀର ଉପରେ ତୁମ୍ଭର ଏତେ ମୋହ ହୋଇ ନ ଥାନ୍ତା । ପ୍ରେମୀ ବନ୍ଧୁ କେବଳ ଶରୀରକୁ

ରକ୍ଷା କରେ ନାହିଁ, ସେ ଦେଖେ, କିପରି ଆତ୍ମାର ରକ୍ଷା ହେବ । ଶରୀର ଅନ୍ତ ହେଉ କିମ୍ବା କାଲି ହେଉ ଦିନେ ନିଶ୍ଚୟ ନଷ୍ଟ ହୋଇଯିବ । ସ୍ନେହରେ ମୁଗ୍ଧ ହୋଇ ଏପରି କ୍ଷଣଭଙ୍ଗୁର ବସ୍ତୁ ଉପରେ ମୋହ ରଖିବା କଦାପି ଉଚିତ ନୁହେ । ଆତ୍ମାର ମୁକ୍ତି ଇଚ୍ଛା କରିବା ତୁମ୍ଭ ପକ୍ଷରେ ଉଚିତ । ତୁମ୍ଭେ ମୋର ପ୍ରକୃତ ବନ୍ଧୁ ଯଦି ହୋଇଥାଅ, ତେବେ ଏହିକ୍ଷଣି ଏହି ହାତବନ୍ଧୁକକୁ ଫିଙ୍ଗି ଦିଅ ଏବଂ ଏହାର ସାହାଯ୍ୟରେ ମୋର ପ୍ରାଣ ରକ୍ଷା କରିବାର ଆଶା ଏକାବେଳକେ ଛାଡ଼ି ଦିଅ । କ୍ୟାଲେନ୍‌ବେକ୍ ସାହେବ ସେହିଠାରେ ସେ ବନ୍ଧୁକଟିକୁ ପକାଇ ଦେଲେ ଏବଂ ନୀରବରେ ଘରକୁ ଲେଉଟି ଯାଇଥିଲେ । ଏହି ଷଡ଼ଯନ୍ତ୍ରର କଥା ଆଉ ଥରେ ଶୁଣି କ୍ୟାଲେନ୍‌ବେକ୍ ସାହେବ କହିଥିଲେ, ଗାନ୍ଧୀ ନିଜେ ତାଙ୍କର ପ୍ରାଣରକ୍ଷା କଥା ବୁଝିବେ । ଈଶ୍ୱର ମଧ୍ୟ ତାଙ୍କର ରକ୍ଷଣାବେକ୍ଷଣ କଥା ବୁଝିବେ । ସେଥିପାଇଁ ଆମ୍ଭମାନଙ୍କର ଚିନ୍ତା କରିବା ଆବଶ୍ୟକ ନାହିଁ ।

ମହାତ୍ମା ଗାନ୍ଧୀ ଥରେ ଡରବାନ ଯାଇଥିଲେ । ସେଠାରୁ ଫେରି ଫିନ-ବେଲକୁ ଜୋହାନ୍ସବର୍ଗ ହୋଇ ଆସିବାର କଥା । କିନ୍ତୁ ଏହି ଜୋହାନ୍ସବର୍ଗରେ ମହାତ୍ମା ଗାନ୍ଧୀଙ୍କୁ ମାରି ପକାଇବାକୁ କେତେ ଲୋକ ଷଡ଼ଯନ୍ତ୍ର କରିଥାନ୍ତି । ସମସ୍ତଙ୍କର ବିଶ୍ୱାସ ଥାଏ ଯେ, ମହାତ୍ମାଜୀ ସେଠାକୁ ଗଲେ ଆଉ ଫେରି ପାଇବେ ନାହିଁ । ସୁତରାଂ ତାହାଙ୍କୁ ଜୋହାନ୍ସବର୍ଗ ନ ଯିବାକୁ ତାହାଙ୍କର ବନ୍ଧୁମାନେ ବହୁତ ପ୍ରାର୍ଥନା କଲେ । କିନ୍ତୁ ମହାତ୍ମାଜୀ ସେମାନଙ୍କର ଏପରି ପ୍ରାର୍ଥନା ଶୁଣିବାର ଲୋକ ନୁହନ୍ତି । ସେ କହିଥିଲେ, ଯଦି ପ୍ରାଣଭୟରେ ମୁଁ ଜୋହାନ୍ସବର୍ଗ ନ ଯାଏଁ, ତେବେ ଜୀବନଧାରଣ କରି ରହିବା ମୋ ପକ୍ଷରେ ଅନୁଚିତ । ମୁଁ ସେଠାକୁ ଯିବାଦ୍ୱାରା ଯଦି ସେମାନଙ୍କର ମନର ଇଚ୍ଛା ପୂର୍ଣ୍ଣ ହୁଏ, ତହିଁରେ ମୋର ଆତ୍ମାର ମୁକ୍ତି ହେବ । ମୁଁ ଯଦି ମରିଯାଏ, ତେବେ ମୁଁ ବୁଝିବି ଯେ, ମୋର ଜୀବନର କର୍ତ୍ତବ୍ୟ ଶେଷ ହୋଇଅଛି ଏବଂ ଈଶ୍ୱର ମୋତେ ଏହି ସଂସାରରେ ଆଉ ରଖିବାକୁ ଚାହାନ୍ତି ନାହିଁ ।

(୪)

ଦକ୍ଷିଣ ଆଫ୍ରିକାରେ ମହାତ୍ମା ଗାନ୍ଧୀ ଗୋଟିଏ ଆଶ୍ରମ-ସ୍ଥାପନ କରିଥିଲେ, ଯେଉଁମାନେ ସବୁ ଛାଡ଼ି ସତ୍ୟାଗ୍ରହ ଲଢ଼େଇରେ ଯୋଗ ଦେଉଥିଲେ, ସେମାନେ ତହିଁରେ ଆଶ୍ରୟ ନେଉଥିଲେ । ମହାତ୍ମା ନିଜେ ସେମାନଙ୍କର ଶିକ୍ଷା ଦୀକ୍ଷାର ଭାର ନେଇଥିଲେ । ଆଶ୍ରମର ବିଶେଷ ନିୟମ ଏହି ଯେ, ସମସ୍ତେ ସତ୍ୟ ମାନି ଚଳିବେ । ଭୁଲ କରି କିଛି ଗୋଟାଏ କାର୍ଯ୍ୟ କରି ପକାଇଲେ ତାହା ସମସ୍ତଙ୍କ ଆଗରେ ମାନିବାକୁ ହେବ । ଏହିପରି ଆଶ୍ରମରେ କେତେଗୁଡିଏ ନିୟମ ଥାଏ । ଥରେ ଜଣେ କେହି ସତ୍ୟାଗ୍ରହୀ କିଛି କାମ କରି ମହାତ୍ମାଜୀଙ୍କୁ ଲୁଚାଇ ରଖିଥିଲେ । କିନ୍ତୁ ପରେ ତାହା ଜଣା ପଡି ଯାଇଥିଲା । ଏହା ଜାଣି ମହାତ୍ମାଜୀଙ୍କ ମନରେ ବଡ଼ ଆଘାତ ଲାଗିଲା । ସେ କହିଲେ, ମୋ ନିକଟରୁ ଶିକ୍ଷା ପାଇ ସତ କହିବାକୁ ଲୋକର ଡ଼ର ହୁଏ । ନିଶ୍ଚୟ ମୋର କିଛି ଦୋଷ ଅଛି । ନଚେତ୍ ସତ୍ୟ କହିବାକୁ ମୋର ଛାତ୍ରମାନେ ଡରନ୍ତେ କାହିଁ ? ଏହି ଦୋଷ ସକାଶେ ମୁଁ ଦାୟୀ । ଅତଏବ ଏହାର ପ୍ରାୟଶ୍ଚିତ୍ତ ମତେ କରିବାକୁ ପଡିବ । ଆଜିଠାରୁ ମୁଁ ଏକ ପକ୍ଷ ଉପବାସ ବ୍ରତ ପାଳନ କରିବି । ହଠାତ୍ ଏହି ପ୍ରତିଜ୍ଞା ଦେଖି ଆଶ୍ରମବାସୀ ସମସ୍ତେ ବଡ଼ ଅଧୀର ହୋଇ ପଡ଼ିଲେ । ମହାତ୍ମା ଗାନ୍ଧୀଙ୍କର ସ୍ୱାସ୍ଥ୍ୟ ସେତେବେଳେ ଭଲ ନ ଥାଏ । ୧୫ ଦିନ ଉପବାସ କଲେ ତାଙ୍କର ପ୍ରାଣ ରହିବ କି ଯିବ, ତାର କିଛି ଠିକ ନାହିଁ । ପୁଣି ମାତାଦେବୀ ଅର୍ଥାତ୍ ମହାତ୍ମାଜୀଙ୍କ ସ୍ତ୍ରୀଙ୍କର ଦେହ ମଧ୍ୟ ଅତ୍ୟନ୍ତ ଅସୁସ୍ଥ ଥାଏ । ଏହି ପ୍ରତିଜ୍ଞା ଶୁଣିଲା ମାତ୍ରକେ ହୁଏ ତ ତାଙ୍କର ପ୍ରାଣ ଚାଲିଯାଇ ପାରେ । ଆଶ୍ରମବାସୀ ସମସ୍ତେ ଆସି ତାଙ୍କୁ ବହୁତ ଅନୁନୟ ବିନୟ କରି ପ୍ରାର୍ଥନା କଲେ ଯେ, ସେ ହଠାତ୍ ଏହି ପ୍ରତିଜ୍ଞା ପାଳନ ନ କରି କିଛିଦିନ ପରେ ପାଳନ କଲେ ଭଲ ହେବ । ଏହାର ଉତ୍ତରରେ ମହାତ୍ମାଜୀ କହିଥିଲେ, "କିଏ ଜାଣେ ମୋର କାଲି କଣ ହେବ । ମୁଁ ଯଦି କିଛିଦିନ ପରେ ମରିଯାଏଁ, ତେବେ ମୋର ପ୍ରତିଜ୍ଞା ଅପୂର୍ଣ୍ଣ ରହିଲା । ମନୁଷ୍ୟ ଯେତେବେଳେ ଯାହା ପ୍ରତିଜ୍ଞା କରେ, ସେତେବେଳେ ତାହା ପାଳନ